# ମୁଖବନ୍ଧ

ପ୍ରାଚୀ ସମିତିର ବ୍ୟବହର୍ତ୍ତା ଶ୍ରୀମାନ୍ ବନ୍ଧନଚରଣ ପ୍ରାୟ ୪ ବର୍ଷ ତଳେ ଦୀନକୃଷ୍ଣ ଦାସଙ୍କର ଜଗମୋହନ ଛନ୍ଦର ଖଣ୍ଡେ ପୋଥି ଖୋରଧା ଅଞ୍ଚଳରୁ ପ୍ରାପ୍ତ ହୋଇ ମୋ ନିକଟ ପଠାଇ ଦେଇଥିଲେ । ଏ ପୋଥିଟି ଜୀର୍ଣ୍ଣ ଶୀର୍ଣ୍ଣ ଏବଂ ଗୋଟିଏ ଖେଦାରୁ ଅଧେ ନଷ୍ଟ । ସେ ଯାହା ହେଉ ଏହା ପାଇଁ ମୁଁ ଯତ୍‌ପରୋନାସ୍ତି ଆନନ୍ଦିତ ହେଲି କାରଣ ରସକଲ୍ଲୋଳର ମୁଖବନ୍ଧ ଲେଖିବା ସମୟରେ ଏହି ଗ୍ରନ୍ଥର ଆବଶ୍ୟକତା ହୋଇଥିଲା । ରସବିନୋଦର ରଚୟିତା ଦୀନକୃଷ୍ଣଙ୍କୁ ରସକଲ୍ଲୋଳର ରଚୟିତା ଦୀନକୃଷ୍ଣଠାରୁ ପୃଥକ୍ ରୂପେ ନିର୍ଦ୍ଦେଶ କରିଥିବା ସମାଲୋଚକଙ୍କ ମତ ପ୍ରମାଦକ ମଣି ମୁଁ ବହୁ ଶ୍ରମସ୍ୱୀକାର ପୂର୍ବକ ଦୀନକୃଷ୍ଣଙ୍କ ପ୍ରକାଶିତ ଗ୍ରନ୍ଥମାନ ତନ୍ନ ତନ୍ନ ପାଠ କରି ଅଭ୍ୟନ୍ତର ତଥା ଆନୁଷଙ୍ଗିକ ପ୍ରମାଣ ବଳରେ ଉଭୟ ଗ୍ରନ୍ଥର ରଚୟିତାଙ୍କୁ ଏକ ବ୍ୟକ୍ତି ରୂପେ ରସକଲ୍ଲୋଳର ମୁଖବନ୍ଧରେ ଦର୍ଶାଇଅଛି । ସେ ସମୟରେ ଜଗମୋହନ ଛନ୍ଦ ପୋଥିଟି ହସ୍ତଗତ ହୋଇଥିଲେ ମୋତେ ଏତେ ଶ୍ରମ ବା ସମୟ ବ୍ୟୟ କରିବାକୁ ହୋଇ ନ ଥାନ୍ତା । ଦୀନକୃଷ୍ଣ ରସବିନୋଦର ଦୁଇ ସ୍ଥାନରେ ନିଜର ଆତ୍ମ ପରିଚୟ ଦେଇ ଅଛନ୍ତି । ସେଥିରୁ ଜଣାଯାଏ, ସେ ସୁବର୍ଣ୍ଣରେଖା ନଦୀତୀରସ୍ଥ ଜଳେଶ୍ୱର ନଗର ସୀମାର ନିକଟବର୍ତ୍ତୀ ଆଠଦଣ୍ଡ ପାଟ ମଧ୍ୟରେ ଜନ୍ମଗ୍ରହଣ କରିଥିଲେ । ସେ ଆଠଦଣ୍ଡପାଟ ତଣଆ ରାଜ୍ୟର ନିକଟବର୍ତ୍ତୀ । ତାଙ୍କ ପିତାଙ୍କର ନାମ ମଧୁସୂଦନ ଦାସ; ବଂଶ ଓ ଜାତିରେ କେହି ଜଣେ କବିତ୍ୱ ଲାଭ କରି ନ ଥିଲେ । ଦୀନକୃଷ୍ଣଙ୍କ ଦୀକ୍ଷା ଓ ଶିକ୍ଷା ବିଷୟରେ କୌଣସି ସ୍ପଷ୍ଟ ପ୍ରମାଣ ନ ଥିଲେହେଁ ରସବିନୋଦର ପ୍ରଥମ

ଅଧ୍ୟାୟରେ  ସେ ଯେ ଇଙ୍ଗିତ ପ୍ରଦାନ କରିଅଛନ୍ତି ସେଥିରୁ ଜଣାଯାଏ ଯେ ତାଙ୍କର ପିତୃ କୁଟୁମ୍ବମାନେ ବାଣିଜ୍ୟ, କୃଷି ଆଦି କାର୍ଯ୍ୟରେ ନିରତ ଥିଲେ କିନ୍ତୁ ସମ୍ଭବତଃ ତାଙ୍କର ବାଲ୍ୟଶିକ୍ଷା ହେତୁ ଓ ପୂର୍ବଜନ୍ମର ବାସନା ହେତୁ ସେ ବାଣିଜ୍ୟ କୃଷି ଆଦି କାର୍ଯ୍ୟମାନଙ୍କରେ ମନ ନ ବଳାଇ ପାପତାପକ୍ଲିଷ୍ଟ ଲୋକଙ୍କ ଉଦ୍ଧାର ନିମିତ୍ତ ସର୍ବଦା ଚିନ୍ତିତ ଥିଲେ ।

ବାଣିଜ୍ୟ କୃଷି କାର୍ତ୍ତିମାନ । ଦୁଃଖର ଅନେକ ବିଧାନ ॥
କିଛିହିଁ ନ ଜାଣିଲି କରି । ହୋଇଲି କୁପୁରୁଷ ପରି ॥
ଏମନ୍ତ ବୋଲି ପ୍ରତିଦିନେ । ବସିଣ ଭାବୁଥାଇ ମନେ ॥
ସଂସାର ଜନ ଉଦ୍ଧାରଣ । କିଛିହିଁ ନୋହିଲା କାରଣ ॥ ଇତ୍ୟାଦି

ଜଗତର ମଙ୍ଗଳ ନିମିତ୍ତ ହୃଦୟରେ ଭଗବତ୍ ପ୍ରେରଣାଜନିତ ସ୍ପନ୍ଦନର ପ୍ରତିବିମ୍ବ ସ୍ଥାନେ ସ୍ଥାନେ ତାଙ୍କ କବିତାମାନଙ୍କରେ ପରିଦୃଷ୍ଟ ହୁଏ ।

ଏବେ ମୁଁ କହୁଅଛି ଯାହା । ସୁଜନେ ହେତୁ କର ତାହା ॥
ଧର୍ମ କଥାକୁ ମନ ଦେଇ । ପାପକୁ ନ ବିଚାର କେହି ॥
ଜୀବନ ଥିବା ପର୍ଯ୍ୟନ୍ତେ । ପାପକୁ ଦଗ୍ଧ କର ଚିତ୍ତେ ॥
ଏ ଦେହ ନ ଥିବ ସର୍ବଥା । କେତେ ଦିନକୁ କେତେ କଥା
ପୃଥ୍ୱୀରେ ଯେତେ ରାଜା ଥିଲେ । ସେମାନେ କେ କି ଦେଶେ ଗଲେ
ପାପ ପୁଣ୍ୟର ସୀମା ଦେଖି । ଅଜିତ ନ ରହିଲେ କେହି ॥
ଏ କଥା ଜାଣି କୃଷ୍ଣ ଦାସ । ପାପପଦ୍କୁ କଲା ଆଶା ॥

ରସବିନୋଦ ।

ଧ୍ୟାନକୃଷ୍ଣଙ୍କ ଅପ୍ରକାଶିତ ଗ୍ରନ୍ଥ ଅମୃତ ସାଗରରେ :—

ଶରଣ ଭୂଷଣ ବାନା ଜଗତେ । ଭକ୍ତ ବୈକୁଣ୍ଠ ଜଗତ ହରେ
ପାଉଲେ ସ୍ୱଜନ ଶରଣ ପଣ । ଅଶେଷ ଜନ୍ମର କଲୁଷ ନାଶ
ନୋହିଲେ ଆଉ ଭଲ ଗତି ନାହିଁ । ଏ ଭବ ସାଗରୁ ତାରିବ କେହି
ଦୀନକୃଷ୍ଣ ଦାସ କହୁଛି ଯାହା । ବୁଝିବି ଜନେ ହେଉ କର ତାହା
ପାଦପଦ୍ମରୁ ଆନ ଗତି ନାହିଁ । ତେଣୁ କହୁଅଛି କାର୍ପଣ୍ୟ ହୋଇ

ଜଗମୋହନ ଛାନ୍ଦ ଓ ରସ କଲ୍ଲୋଳରେ ଏହି ସ୍ତୁତିର ଭକ୍ତିମାନ ଅଛି । ଭକ୍ତ ଭାବରେ ଦେଖିବାକୁ ଗଲେ ତାଙ୍କ ଆସନ ଅତି ଉଚ୍ଚ । ତାଙ୍କର ଭକ୍ତି ଜ୍ଞାନମିଶ୍ରା । ଭଗବତ୍ତତ୍ତ୍ୱଜ୍ଞାନରେ ଯେ ନିଷ୍ଠଳା ଭକ୍ତି— ଶ୍ରୀକୃଷ୍ଣରସ ମାଧୁରୀ ପାନରେ ଯେ ଐକାନ୍ତିକ ନିଷ୍ଠା ଦୀନକୃଷ୍ଣଙ୍କଠାରେ ପରିଦୃଷ୍ଟ ହୁଏ ତାହା ତାଙ୍କୁ ପରମ ବୈଷ୍ଣବର ଆସନରେ ଆସୀନ କରାଇ ଅଛି । ମହାପୁରୁଷ ଶ୍ରୀ ଜଗନ୍ନାଥ ଦାସଙ୍କ ପ୍ରବର୍ତ୍ତିତ ଅତି ବଡ଼ ସମ୍ପ୍ରଦାୟର ସେ ଅନ୍ତର୍ଭୁକ୍ତ ଥିଲେ । ଏହା ରସକଲ୍ଲୋଳ ଓ ମଥୁରାମଙ୍ଗଳର ମୁଖବନ୍ଧରେ ସୂଚିତ ହୋଇଅଛି ।

ଦୀନକୃଷ୍ଣଦାସ ରସବିନୋଦ ଗ୍ରନ୍ଥର ଅବତରଣିକାରେ ରସବିନୋଦ ରଚନାକାଳ ଅବଧି ଯେ ଗ୍ରନ୍ଥ ମାନ ରଚନା କରିଥିଲେ ତାହାର ତାଲିକା ଦେଇ ଅଛନ୍ତି । ଗୁଣସାଗର, ରସସମୁଦ୍ର, ସଂସାରବୋଧନ, ଅମୃତସାଗର, ମୁକ୍ତିସାଗର, କଳିଯୁଗଶାସ୍ତ୍ର, ପ୍ରସ୍ତାବସାଗର, ଜଗମୋହନ ଛାନ୍ଦ, ଜାମ୍ବବତୀବିଭା, ବୃନ୍ଦାବନରାସ, କଂସବଧ, ଜ୍ଞାନସାଗର, ଧର୍ମସାଗର, ଶ୍ରିଯାପତ୍ୟନବତୀପ୍ରଭୃତିଙ୍କବିଭା, ନାମରତ୍ନଗୀତା, ରସବିନୋଦ, ନାରକାସୁର ବଧ, ରୁକ୍ମଣୀବଧ, ବାଣାସୁର ଯୁଦ୍ଧ, ଜ୍ଞାନଚୂଡ଼ାମଣି, ସ୍ତ୍ରୀପୁରୁଷ ଲକ୍ଷଣ, ଭକ୍ତିସାଗର, ମହିମାସାଗର ଓ ଚଉତିଶାମାନ । ଏହି ତାଲିକାରୁ ବୁଝିବା ଉଚିତ ନୁହେଁ ଯେ ରସବିନୋଦ ପରେ ଦୀନକୃଷ୍ଣ ନାରକାସୁରବଧ

ପ୍ରଭୃତି ଚଉତିଶାମାନ ଲେଖିଥିଲେ । ରସବିନୋଦ ଲେଖାବେଳକୁ ଏ ସବୁ ଲେଖା ହୋଇ ସରିଥିଲା । ରସବିନୋଦ ଗ୍ରନ୍ଥରେ ସେମାନଙ୍କର ନାମୋଲ୍ଲେଖ ତାହାର ପ୍ରକୃଷ୍ଟ ପ୍ରମାଣ । ଯେଉଁ ସମାଲୋଚକମାନେ ରସ-କଲ୍ଲୋଳକାରଙ୍କ ଭାଷା ତଥା ରଚନା ପଦ୍ଧତି ରସବିନୋଦକାରଙ୍କ କୃତିମାନଙ୍କରେ ପରିଦୃଷ୍ଟ ହୁଏ ନାହିଁ ବୋଲି ସେମାନଙ୍କୁ ପୃଥକ୍ ରୂପେ ଗ୍ରହଣ କରିଅଛନ୍ତି, ସେମାନେ ଭାଷାର ସହଜଶକ୍ତିଜନିତ ସମତା ପରିଦର୍ଶନ କରିବାରେ ଅସମର୍ଥ ହୋଇଅଛନ୍ତି । ବ୍ୟକ୍ତି ବିଶେଷଙ୍କର ଭାଷାଗତ ବୈଶିଷ୍ଟ୍ୟ ଭାଷାତତ୍ତ୍ୱର ବିଶେଷାଭିଜ୍ଞଙ୍କ ଦୃଷ୍ଟିରେ ପ୍ରତିଭାତ ହୁଏ । ରସକଲ୍ଲୋଳର ମୁଖବନ୍ଧରେ ପ୍ରଦର୍ଶିତ ହୋଇଅଛି, ଯେ ପ୍ରସଙ୍ଗର ଅନୁରୋଧରେ ରଚନାର ରୀତି ପୃଥକ୍ ରୂପ ଧାରଣ କରେ କିନ୍ତୁ ଭାଷାର ସହଜଭାବ ତଥା ଝଙ୍କାର ସର୍ବତ୍ର ଏକରୂପରେ ବିଦ୍ୟମାନ ।

ବର୍ତ୍ତମାନ ରସକଲ୍ଲୋଳର ପଦମାନଙ୍କ ସହିତ ଜଗମୋହନ ଛାନ୍ଦର କେତେକ ପଦମାନଙ୍କର ତୁଳନା କରାଯାଉ ।

(୧) କଲ୪ କଲେ ବିଷ୍ଣୁଙ୍କୁ ସ୍ତୁତିପର୍ଯ୍ୟେ ।
ଗମନ କଲେ ତା ପରିକ୍ରମାକୁ ପାଏ ।
ଶୋଇଥିଲେ ଯହୁଁ ଦଣ୍ଡପ୍ରଣାମ ସମ ।
ଅମିଷ ଆହାର ଅଦ ହବିଷ୍ୟ କର୍ମ ।

ଜଗ:—୧–୨।୨

କରୁଥିଲେ ଗତି ପରିକ୍ରମାମତି କଳନ୍ତୁ ସ୍ତୁତିପର୍ଯ୍ୟେ
କରନ୍ତେ ଅମିଷ ଆଦ ଦ୍ରବ୍ୟ ଗ୍ରାସ ହବିଷ୍ୟ ବର୍ତ୍ତିକୁ ପାଏ ।
କଲେ ନିଦ୍ରା ଯହୁଁ ଦଣ୍ଡପ୍ରଣାମହିଁ ଫଳ ହୁଅଇ ପ୍ରାପତ ।
କଳତ୍ରାଦି ସୁତ ସେନାଙ୍କର ଭୃତ୍ୟମାନେ ଜୀବନ ମୁକତ

ର:କ:୧୪–୧୪।୨୫

(୨) ଖଳ ବଳ ମୂର୍ଖ ଲୋକଙ୍କୁ ଏ ସୁଖଦାୟକ ନୁହଇ କେବେହେଁ
ଚନ୍ଦ୍ର ଉଦେ ହେଲେ ଅକର୍ମଶିଳା ଯେ ଲେଶହେଁ ଦ୍ରବୀଭୂତ ନୁହେ
ବୋଧ ନୁହନ୍ତି
ଯେ ହେବ ତାହାଙ୍କୁ କହିଲେ
ମାନ୍ତ୍ରମାର୍ଜାର ସର୍ପ ଫେଣ ନ ଧରେ ଯେତେ ପଦ୍ମତୋଳା ଗାଇଲେ ।

ଜଗ:୪—୨୧

ବଳାଙ୍କର ଉଦେ ହେଲେ ଚନ୍ଦ୍ରମଣି ଦ୍ରବେ
କେତେ ବେଳେ ଅକର୍ମଶିଳାରୁ ନୀର ସ୍ରବେ
କୋମଳ କଣ୍ଠ ଗାଇଲେ ପଦ୍ମତୋଳା ଗୀତ
କରେ ମାନ୍ତ୍ରମାର୍ଜାର ଫଣୀ ଫଣା ଉନ୍ନତ ।

ର:କ:୭—୩୨

(୩) କିଂଶୁକ କୁସୁମ ପାଟ କରବାଳ ରଙ୍ଗ କୋଷରେ ଭୁଆଇଁ
ଅଛନ୍ତି ବିଶ୍ୱାସ କର ଦ୍ୱିଜବର ଗୋଚରେ ଥାଇ ତା ଦେଇ
ହେ ଜନେ

ଜଗ:୬—୨

କିଂଶୁକ ପାଟ କରବାଳ ତାହାର
କନବାରୁ ରଙ୍ଗ କୋଷେ ତାହା ସଙ୍ଗ ସୁଖ ନୋହୁ ଅନ୍ତ କାହାର

ରକ:୧୨—୩

(୪) କୁଟୁମ୍ବୀ ଘନଜନ ମନ ପରସ୍ପେ ହବସ ହୋଏ ସନ୍ତପନ୍ତ

ଜଗ-୭-୨

କୁଟୁମ୍ବୀ ଘନଜନ ମନ ପରସ୍ପେ ସନ୍ତାପି ହେଲେ ଏକା ହନେ

ର:କ-୧୫-୩ ।

( ୫ ) କୃପଣଙ୍କୁ ଲୋଭି ସୁଦ୍ଧ କଲ୍ପ ପ୍ରାଏ ଶ୍ରମହିଁ ସିନା ରହିବ

ଜଗ ୭-୨୯ ।

କୃପଣଙ୍କୁ ଲୋଭି ପ୍ରାପ୍ତେ ତାଙ୍କ ଲଭ ଅଣା ଅକଲେ ମୂରୁହିଁ ପୋଡ଼

ର:କ:—୩୨-୨୮ ।

( ୬ ) ବନେ ବନାନଳ ଜଳନ୍ତି ପ୍ରବଳ ଫୁଟନ୍ତି ତୃଣଧ୍ୱଜମାନେ

ଜଗ : —

ବନେ ବନ ଅଗ୍ନି ଦ୍ୱସିଲେ ସ୍ୱଜନେ, କାହିଁ ତୃଣଗ୍ରଜେ ଫୁଟନ୍ତି

ର : କ; ୧୫-୩ ।

( ୭ ) ଫେନ ଉଦଗାର ଗନ୍ଧର୍ବ ବଜର ଲୋଟନ୍ତି ପଡ଼ି ପାଦପଙ୍କେ ।

ଜଗ :-

କର୍ଦ୍ଦମରେ ପଡ଼ି ଫେନମୁଖେ ରଡ଼ି ଛଡ଼ନ୍ତି ଗନ୍ଧର୍ବ ବଇର ।

ର : କ : — ୧୫-୫ ।

ପୁନଶ୍ଚ :—ମୟୂର ପୁଚ୍ଛ ଛଇ ତଳେ

ଜୟୂନ୍ତୁ ପକାଇ ଭୁଜଙ୍ଗମ ଯାଇ ଶୟନ କରଇ ହକଲେ

ଜଗ : —

କୁଣ୍ଡଳୀକୁଳ ଏହିରୂପେ କଳାପିକଳାପ ତଳରେ ରହିଲେ ପାଇ ବପତ୍ତିକ ଆତପେ : —

ର କ : ୧୫-୬ ।

( ୮ ) ଜଗମୋହନର ୭ମ ଛାନ୍ଦର ୨୭ ପଦ 'ସହିତ ରସ-କଲ୍ଲୋଳର ୩୪ଶ ଛାନ୍ଦର ୩୮ । ୩୨ ପଦ; ଜଗମୋହନର ୧୦ମ ଛାନ୍ଦ ସହିତ ରସକଲ୍ଲୋଳର ୧୬ମ ଛାନ୍ଦ ଓ ଜଗମୋହନର ୧୪ଶ ଛାନ୍ଦ ସହିତ ରସକଲ୍ଲୋଳର ୧୪ଶ ଛାନ୍ଦ ତୁଳନା କଲେ ଏକ ଭାବରଲେଖା ପରିଦୃଷ୍ଟ ହେବ ।

( ୯ ) କେତେକ ସ୍ଥଳରେ ପଦର ବ୍ୟବହାରରେ ଦୀନକୃଷ୍ଣଙ୍କର ଯେ ବିଶେଷତ୍ୱ ଲକ୍ଷିତ ହୁଏ ତାହା ଉକ୍ତ ଗ୍ରନ୍ଥରେ ପରିଦୃଷ୍ଟ ହୁଏ କଲାପୀ କଲାପ, ବାରଣ ବାରଣ, ଅନ୍ତକ ସଙ୍ଘାତ, କଥା-ପ୍ରସଙ୍ଗ, ବକ୍ରବାଣୀ, କଳ୍ପ, ପୁଷ୍ପବଲ୍ଲୀ, ଅନୁପାନ, ଛାୟା, ପ୍ରବନ୍ଧ, ବିଠଙ୍କ, ଇତ୍ୟାଦି ।

( ୧୦ ) ଦୀନକୃଷ୍ଣଙ୍କ ଚତୁଃଶିଆମାନଙ୍କ ସହ ଜଗମୋହନ ଓ ରସ-କଲ୍ଲୋଳର ଅନେକାଂଶରେ ସମତା ପରିଦୃଷ୍ଟ ହୁଏ । ବାହୁଲ୍ୟ ଭୟରୁ ଉଦାହରଣ ପ୍ରଦତ୍ତ ହେଲା ନାହିଁ ।

( ୧୧ ) ରସକଲ୍ଲୋଳର ମୁଖବନ୍ଧରେ ପ୍ରସ୍ତାବସାଗର ବା ପ୍ରସ୍ତାବଚିନ୍ତାମଣି ଓ ଧର୍ମସାଗର ସହିତ ରସକଲ୍ଲୋଳର ପଦମାନଙ୍କରେ ସମତା ପ୍ରଦର୍ଶିତ ହୋଇଅଛି ।

( ୧୨ ) ବର୍ତ୍ତମାନ ଅମୃତ ସାଗର ବୋଲି ( ଗୀତଗୋବିନ୍ଦର ଅର୍ଥ ) ଯାହା ରସବିନୋଦର ଅବତରଣିକାରେ ନିର୍ଦ୍ଦେଶିତ ହୋଇଅଛି ତାହାର ୧ମ ଛାନ୍ଦରୁ କେତେକ ପଦ ନିମ୍ନରେ ଉଦ୍ଧୃତ ହେଲା । ତହିଁରେ ରସକଲ୍ଲୋଳକାରଙ୍କ ଭାଷା ଓ ରଚନା ଶୈଳୀର ପୂର୍ଣ୍ଣ ପରିଚୟ ପ୍ରଦାନ କରେ ।

ଭୁବଙ୍ଗୀ ଭଙ୍ଗିମା କେ ପାରେ ଜାଣି ।
କି ଶୋଭା ଦିଶଇ ଲାବଣ୍ୟ ଠାଣି ।
ଲୋଚନେ ଅଛି କି ମଦନ ବାଣ ।
ତହିଁକି ସୁନ୍ଦର ଅଞ୍ଜନ ଗୁଣ ।
କର୍ଣ୍ଣରେ ମାଣିକ୍ୟ କୁଣ୍ଡଳ ଶୋହେ ।
ଦେଖିଲା ଜନର ମନକୁ ମୋହେ ।

ଭଙ୍ଗିମା ଜୁଡ଼ାରେ ଭଙ୍ଗିମା ଫୁଲ ।
ନାୟିକା ଯୁଡ଼ାକୁ କି ଦେବା ଭୁଲ ।

କଣ୍ଠେ ଶୋଭିତ କଉସ୍ତୁଭ ମଣି ।
କୋଟି କୋଟି ଚନ୍ଦ୍ରମାନଙ୍କ ଜିଣି ।

ବରକୋଳିଆ ମୁକୁତାରୁ ମାଳେ ।
ଢଳ ଢଳ ପଦ୍ମ ହୃଦରେ ଲୁଳେ ।

ଏହି ଗ୍ରନ୍ଥ ପ୍ରାଚୀ ସମିତିଦ୍ୱାରା ପ୍ରକାଶିତ ହେବ । ଜାମ୍ବବତୀ ବିଭା ବୃନ୍ଦାବନ ରାସ, ମୁକ୍ତିସାଗର, ରୁକ୍ମଣିବଧ, ବାଣାସୁର ଯୁଦ୍ଧ ପ୍ରଭୃତି ଗ୍ରନ୍ଥମାନ ଏପର୍ଯ୍ୟନ୍ତ ପ୍ରାଚୀ ସମିତିର ହସ୍ତଗତ ହୋଇ ନାହିଁ । ସେ ଯାହା ହେଉ ଜଗମୋହନଷ୍ଟନ ଓ ଅମୃତ ସାଗର ଏହି ଦୁଇ ଗ୍ରନ୍ଥଦ୍ୱାରା ସ୍ପଷ୍ଟ ପ୍ରତିପାଦିତ ହେଲା ଯେ ରସକଲ୍ଲୋଳର ରଚୟିତା ଓ ରସ-ବିନୋଦର ରଚୟିତା ଏକ ବ୍ୟକ୍ତି ଅଟନ୍ତି ।

କୌଣସି କୌଣସି ସମାଲୋଚକ କହନ୍ତି ଯେ ରସବିନୋଦକାର ଦୀନକୃଷ୍ଣ ନୀଚ ଧରଣର କବି, କାରଣ ରସବିନୋଦରେ ସେ ଲେଖି-ଅଛନ୍ତି " ଅକ୍ଷର ଗଣିମ ହସ୍ତରେ । ତେବେ ସେ ଲେଖିବ ପଦରେ । ଏ ସ୍ଥଳରେ ଅନ୍ୟ କେତେ ପଦ ଉଦ୍ଧାର ନ କଲେ କବିଙ୍କ ଭାବ ସ୍ପଷ୍ଟ ଭାବରେ ପ୍ରତିପନ୍ନ ହେବ ନାହିଁ ।

ଏ ଗ୍ରନ୍ଥ ଚରଣକୁ ଚିହ୍ନ । ନବ ଅକ୍ଷର ପରଚ୍ଛିନ୍ନ ।
ଅଷ୍ଟ ଅକ୍ଷର ହୋଇ ନାହିଁ । ଦଶ ହୋଇବ ଅବା କାହିଁ ।
ଲେଖିବା ପଢିବାର ଲୋକ । ସେ ଯେବେ ହୋଇବ ବିବେକ ।
ଅନୁଭବରେ ଦେବ ମନ । ବିଚାର କରିବା ଲେଖନ ।
ଅକ୍ଷର ଗଣିମ ହସ୍ତରେ । ତେବେ ସେ ଲେଖିବ ପଦରେ ।

ମନ ନମ୍ରନ ଏକ କର । ଲେଖନ ମୁନେ ଦୃଷ୍ଟି ଭର ।
ଚୈତନ୍ୟ ନ ଟଳିବ ଯେବେ । ଅକ୍ଷର ନିର୍ଗ ହୋଇ ଥିବେ ।

× × × × ×

ଏମନ୍ତ ଭାବେ ଯେବେ ଲେଖି । ଏଥିକୁ ଜଗନ୍ନାଥ ସାକ୍ଷୀ ।
ଶ୍ଳୋକ ଖବଦ ଗୋଳ ଗାରେ । ଚିତ୍ତ ନ ଦେବ ଅନ୍ୟ ଅଥେ ।

ଦୀନକୃଷ୍ଣଙ୍କ ପୂର୍ବାର ଅଧିକାଂଶ କବିମାନଙ୍କ କୃତ୍ତର ଅସମ ଅକ୍ଷର ବିନ୍ୟାସ ତଥା ଦାଣ୍ଡ୍ରିବୃତ ଦର୍ଶନରେ ଦୀନକୃଷ୍ଣ ଭବିଷ୍ୟତ ଲେଖକଙ୍କୁ ଏହା ପରିହାର କରିବା ନିମନ୍ତେ ସାବଧାନ କରାଇ ଅଛନ୍ତି । କିନ୍ତୁ ଯେଉଁ ମାନେ ତାଙ୍କର ଉକ୍ତ ଉକ୍ତି ଦର୍ଶନରେ ତାଙ୍କୁ କସରତିଆ କବି (Laboured poet) ବୋଲି କହନ୍ତି ସେମାନେ କବିତ୍ୱର କାରଣ କଣ ତାହା ଜାଣନ୍ତି ନାହିଁ । ଅଳଙ୍କାରିକମାନଙ୍କ ମତରେ ପ୍ରତିଭା, ବହୁଶାସ୍ତ୍ର ଦର୍ଶିତା ଓ ଅଭ୍ୟାସ ଏହି ତିନ ଗୋଟି ମିଶ୍ରିତ ହୋଇ ସମଷ୍ଟିଭାବରେ କବିତ୍ୱର ଏକ କାରଣ ରୂପେ ଗୃହୀତ । କେତେକଙ୍କ ମତରେ ପ୍ରତିଭାହିଁ କବିତ୍ୱର କେବଳ କାରଣ ଅଟେ । ତାହା ସତ୍ୟ, ବାଳକଙ୍କ ଦ୍ୱାରା କବିତା ରଚନା ତାହାର ନିଦର୍ଶନ କିନ୍ତୁ ସେହି ତିନଗୋଟିକୁ କାରଣ ରୂପେ ଗ୍ରହଣ କରିବାର ଅଭିପ୍ରାୟ ଏହି ଯେ ତଦ୍ୱାରା ଉତ୍ତମ ଶ୍ରେଣୀର କବିତା ରଚିତ ହୁଏ ।

ପ୍ରତିଭାରୁ କବିତ୍ୱ ଜାତ ହୁଏ । ଅଭ୍ୟାସ ଯୋଗରେ କବିତ୍ୱ ପରି ବର୍ଦ୍ଧିତ ହୁଏ । କବିତ୍ୱର ଗୁରୁତା ନିଷ୍ପାଦନରେ ବ୍ୟୁତ୍ପତ୍ତିହିଁ ପ୍ରଧାନ ଅଟେ । ଦଣ୍ଡୀଆଚାର୍ଯ୍ୟ କହନ୍ତି:—ପ୍ରତିଭା ଓ ପୂର୍ବବାସନାର ଅଭାବରେ ମଧ୍ୟ ଅଧ୍ୟୟନ ଓ ଶ୍ରମ ବା ଯତ୍ନରେ ସେବିତା ହେଲେ ବାଗ୍‌ଦେବୀ କାହାର କାହାରକୁ ଅନୁଗ୍ରହ କରନ୍ତି ।

ନ ବଦ୍ୟତେ ଯଦ୍ୟପି ପୂର୍ବ ବାସନା ଗୁଣାନୁବନ୍ଧି ପ୍ରତିଭାନମଦ୍ଭୁତମ୍
ଶ୍ରୁତେନ ଯତ୍ନେନ ଚ ବାଗୁପାସିତା ଧ୍ରୁବ କରୋତ୍ୟେବ କମପ୍ୟନୁଗ୍ରହମ୍

ରସବିନୋଦକାର ଶ୍ରମସ୍ୱୀକାର କରି ଗ୍ରନ୍ଥ ଲେଖିଲେ ବୋଲି ସେ ନୀଚ ଧରଣର କବି ଏହା କହିବା ସମୀଚୀନ ନୁହେଁ । କାରଣ ରସକଲ୍ଲୋଲ କାର ରସକଲ୍ଲୋଳର ୧୬ଶ ଛାନ୍ଦ ୨୦ପଦରେ ଲେଖିଅଛନ୍ତି ।

କହୁଅଛୁ ସୁଜନମାନଙ୍କୁ ଏତେ ଯେ
କୃପା କରିବ ମୋତେ ପ୍ରସନ୍ନ ଚିତ୍ତେ ହେ ।
କିଅ ଅକ୍ଷରେ କଲୁ ଯେ ଗୀତ
କେବେହେଁ ଏଥି ନ ହେବ ଘାତ
କବି ହେଲେ ତ ଜାଣିମ ଏଥି ଶ୍ରମହିଁ ଯେତେ ହେ ।

ରସକଲ୍ଲୋଳକାରଙ୍କ ଏ ଉକ୍ତିରୁ ଜଣା ପଡ଼େ ଯେ ସେ ବହୁ ଶ୍ରମ ସ୍ୱୀକାର କରି ରସକଲ୍ଲୋଳ ଲେଖିଥିଲେ ତାହାଙ୍କୁ କେ ନୀଚ ଧରଣର କବି ? ପରିଶେଷରେ ବକ୍ତବ୍ୟ ଏହି ଯେ ଅମ୍ଭମାନଙ୍କର ଅନୁଶୀଳନୀ ଓ ଆଲୋଚନାର ଅଭାବରୁ ନାନା ଅଯୌକ୍ତିକ କଥା ସାହିତ୍ୟରେ ସ୍ଥାନ ପାଉଅଛି ।

ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି



# ସୂଚୀପତ୍ର


| ବିଷୟ | ପୃଷ୍ଠା |
| --- | --- |
| ମୁଖବନ୍ଧ | |
| ପ୍ରଥମ ଛନ୍ଦ | ୧ |
| ଦ୍ୱିତୀୟ ଛନ୍ଦ | ୧୨ |
| ତୃତୀୟ ଛନ୍ଦ | ୨୩ |
| ଚତୁର୍ଥ ଛନ୍ଦ | ୩୪ |
| ପଞ୍ଚମ ଛନ୍ଦ | ୩୯ |
| ଷଷ୍ଠ ଛନ୍ଦ | ୪୫ |
| ସପ୍ତମ ଛନ୍ଦ | ୫୪ |
| ଅଷ୍ଟମ ଛନ୍ଦ | ୬୦ |
| ନବମ ଛନ୍ଦ | ୬୮ |
| ଦଶମ ଛନ୍ଦ | ୮୩ |
| ଏକାଦଶ ଛନ୍ଦ | ୯୦ |
| ଦ୍ୱାଦଶ ଛନ୍ଦ | ୧୦୦ |
| ତ୍ରୟୋଦଶ ଛନ୍ଦ | ୧୦୬ |
| ଚତୁର୍ଦ୍ଦଶ ଛନ୍ଦ | ୧୧୪ |
| ଶୁଦ୍ଧିପତ୍ର | |
| ଟୀକା | |

# ଜଗମୋହନ ଛାନ୍ଦ

## ପ୍ରଥମ ଛାନ୍ଦ

ରାଗ—ଗୁଜ୍ଜରୀ

( ସଙ୍ଗମଭଅସ୍ତ ବାଣୀରେ ଗାଇବ )

ଅନାଦ୍ୟ-କନ୍ଦ-ଚରଣେ ଦ୍ୱୋଇ ରଗଢ ।
ଏକ ମନେ ଶୁଣ ଜଗମୋହନ ଗୀତ । ୧ ।

ଅଶେଷ କୋଟି ବ୍ରହ୍ମାଣ୍ଡ ମଧ୍ୟେ ଉତ୍ତମ ।
ଏକ କ୍ଷେତ୍ର ଅଛି ନାମ ପୁରୁଷୋତ୍ତମ । ୨ ।

ଭରତ ଖଣ୍ଡ ଶେଷରେ ଦିକ୍ଷ ପାଶୁଶେ ।
ପଞ୍ଚ କୋଶ ଶଙ୍ଖ ଆକୃତିରେ ପ୍ରକାଶେ । ୩ ।

କେ କହିବ ବଚନେ ସେ କ୍ଷେତ୍ର ମହିମା ।
ଯମ ନ ଲଙ୍ଘଇ ଯହିଁ ମୁକତି ସୀମା । ୪ ।

ଅଗତି ଲୋକର ସେହି ପରମ ଗତି ।
ଅନେକ ବିଚିତ୍ର କଥା ଚହିଁରେ ଥାନ୍ତି । ୫ ।

କଳିବ କଲେ ବସ୍ତୁଙ୍କୁ ସୁଦ୍ଧ ପରିଏ ।
ଗମନ କଲେ ତା ପଦ୍‌ଦମାଙ୍କୁ ପାଏ । ୬ ।

ଶୋଇଥିଲେ ଯହିଁ ଦଣ୍ଡପ୍ରଣାମ ସମ ।
ଅମିଷ ଆହାର ଅଛି ହବିଷ୍ୟ କର୍ମ । ୭ ।

ଥାବର ଜଙ୍ଗମ ଯାନ୍ତ ପତଙ୍ଗମାନେ ।
ଦେହାବସାନେ ବସନ୍ତି ପରମ ସ୍ଥାନେ । ୮ ।

ବ୍ରହ୍ମ ପ୍ରଳୟରେ ଯେହ୍ନ ନୁହଇ ନାଶ ।
ଅତୁଳନୀ ଥଳ ଭୂମି ସଦା ପ୍ରକାଶ । ୯ ।

ଚଉପାଶେ ବେଢ଼ି ନଦୀ ସାଗର ରଙ୍ଗେ ।
କମ୍ବୁ କଣ୍ଠକଙ୍କୁ ଝଳ ପରସ୍ପେ ଶୋଭେ । ୧୦ ।

ଚଇତ୍ରରଥ ନନ୍ଦନ ଗର୍ବଙ୍କୁ ଦଣ୍ଡି ।
ଉତ୍ତମ ଅରମେ ହୋଇ ଅଛନ୍ତି ମଣ୍ଡି । ୧୧ ।

ବସ୍ତୁ ଉପଯୋଗ ଫୁଲ ଫଳାଦି ତହିଁ ।
ବଚନରେ କେତେ ତାହା ବଦିବ କହି । ୧୨ ।

ଥାବର ଦେହକୁ ପାଇ ତାହାଙ୍କ ପରି ।
ନାହାନ୍ତି ଭକ୍ତିବନ୍ତ ସେ ଅତ୍ୟନ୍ତ ଧୀରି । ୧୩ ।

ବୈଷ୍ଣବ ପଣକୁ ତାଙ୍କ ପରିଏ ସେହି ।
ବୈଷ୍ଣବ ହେଲେହେଁ ଲୋକେ ଶୋଚନା ନାହିଁ । ୧୪ ।

ଶୀତ ଖରା ବରଷା ସେ ସବୁ ସହନ୍ତି ।
ଅହର୍ନିଶି ପ୍ରସାଦ ସୁମନ ବହନ୍ତି । ୧୫ ।

ଧନ୍ୟ ଧନ୍ୟ ଧନ୍ୟ ତାହାଙ୍କର ବାସନା ।
ସେହି ଯେଣ ବକ୍ଷୁର ସେ ପୀରତି ଚିନା । ୧୬ ।

ପଥିକ ପାଇବାବେ ସେ ଅତ୍ୟନ୍ତ ରତ ।
ଫୁଲ ଫଳ ପଦ୍ମାସନ କରନ୍ତି ଦତ୍ତ । ୧୭ ।

ଶବ୍ଦ ଚିହ୍ନ ଏକାକାର ଦ୍ୱିଜେ ବିଶ୍ୱାସ ।
ଫଳ ଭୋଜନେ ତାଙ୍କୁ କରନ୍ତି ଆଶ୍ୱାସ । ୧୮ ।

ସହସ୍ର୍ ପଣରୁ ଶସ୍ତ୍ରଘାତ ସମ୍ମତ ।
ଅବିରତ ହୋଇଥାନ୍ତି ମଉନ-ବ୍ରତ । ୯ ।

କହୁଲେ ନକ୍ଷ ସରିବ ତାଙ୍କ ଚରିତ ।
ବର୍ତ୍ତିଲେ ବୃଷେ ଅଛୁ ବୈଷ୍ଣବ ମତ । ୧୦ ।

ଏହୁ ଯେଣ କ୍ଷେତ୍ରବରେ ଅଛନ୍ତି ରହି ।
ନେତ୍ରପଥେ ଦେଖି ଲୋକେ ହୁଅନ୍ତି ମୋହି । ୧୧ ।

ଆନ ବୃକ୍ଷମାନଙ୍କର ଏ ଗୁଣ ନାହିଁ ।
ମାରକ କଣ୍ଟକ ଆଦି ଅବଗୁଣହିଁ । ୧୨ ।

ଏଣୁ ତାହାଙ୍କର ନାହିଁ କ୍ଷେତ୍ରରେ ବାସ ।
ସାଧୁଙ୍କୁ ଦୁର୍ଜନ ସଙ୍ଗ ସହଜେ ବିଷ । ୧୩ ।

ଅମୃତ ଆହାର ସେ ନଗ୍ରରେ ବହୁତ ।
ଅମୃତ ସମ ଶୀତଳ ତହିଁ ଅମୃତ । ୧୪ ।

ଅମୃତ କୁସୁମମାନ ଫୁଟନ୍ତି ତହିଁ ।
ସିତ ଅସିତ ଲୋହିତ ବର୍ଣ୍ଣରୁ ବହି । ୧୫ ।

ଅନେକ ଅମୃତଚର ପତଙ୍ଗମାନେ ।
ଆନନ୍ଦେ ବିହରନ୍ତି ସେ ଅମୃତ ସ୍ଥାନେ । ୧୬ ।

ଅବଗାହି ମାତ୍ରକେ ହୁଅନ୍ତି ପବିତ୍ର ।
ବିମଳ କ୍ଷେତ୍ର ପ୍ରସାଦୁଁ ଏ କି ଚିତ୍ର । ୧୭ ।

ଯହିଁ ଜଳେ ପକ୍ଷୀ ଧରେ କାଳ ଅଣ୍ଡଜ ।
ବିଷ୍ଣୁ ପ୍ରାପ୍ତେ ଗଦା ପଦ୍ମ ଶଙ୍ଖ ଅମ୍ବୁଜ । ୧୮ ।

ବିସ୍ତାର କରି କେତେ କହିବି ତାହା ।
ବେଦ ବେଦାନ୍ତେ ଗୋଚର ନୋହିବ ଯାହା । ୧୯ ।

ପନ୍ତି ପନ୍ତି ହୋଇ ପୁର ଅନେକ ତହିଁ ।
ଜନ୍ତାଜନ୍ତି ହୋଇଛନ୍ତି ବନ୍ଧାଗ ନାହିଁ ।୩୦।

ସୁଧା-ଲେପମାନଙ୍କରେ ସୁନ୍ଦର ଭିତ୍ତି ।
ସହଜେ ଜନନ୍ତି ପୂର୍ଣ୍ଣ ଚନ୍ଦ୍ରମା ଜ୍ୟୋତି ।୩୧।

ହଟକ ତଟରେ ବଡ଼ ଶୋଭା କେ ପାଏ ।
ନିର୍ମଳ ହୃଦରେ ଅନୁରାଗ ପରାଏ ।୩୨।

ବାତାୟନମାନେ ତହିଁ ଦିଶନ୍ତି ଶୋଭା ।
ବିଲୋକନ ମାହକରେ ନୟନ ଲୋଭା ।୩୩।

ନାଗରୀଙ୍କ ଗୃହିଁବାରୁ ଏମନ୍ତ ଦିଶେ ।
କାମକାଣ୍ଡ ଦୁର୍ଗ ଦଣ୍ଡ ପରାୟେ କ ସେ ।୩୪।

ରାଜମାର୍ଗମାନ ମହାଶୋଭାକୁ ପାଏ ।
ଅବନୀ କାମିନୀ ଶିର ସୀମନ୍ତ ପ୍ରାଏ ।୩୫।

ଗତାଗତ ଲୋକରେ ଅତ୍ୟନ୍ତ ଗହଳ ।
ହର ତରତ ଗୀତରେ ଅତି ଚହଳ ।୩୬।

ଅନେକ ବର୍ଣ୍ଣର ଲୋକେ ଅଛନ୍ତି ରହି ।
ଯେ ଯାହାର କର୍ମ[illegible]ର୍ମମାନଙ୍କୁ ବହି ।୩୭।

ଏମନ୍ତ କ୍ଷେତ୍ରରେ [illegible]ଜନ ମହା ସମ୍ପତ୍ତି ।
ବିଜୟେ ଶ୍ରୀ ଜଗନ୍ନା[illegible] ଦେବ ନୃପତି ।୩୮।

ଅପାରୁ ଅପାର ତ[illegible]ମା ।
ଅଦ୍ୟହିଁ ଜାଣି ନା[illegible]ବ୍ରହ୍ମା ।୩୯।

ଅଶେଷ ବ୍ରହ୍ମାଣ୍ଡେ [illegible] ସେହି ।
ତାଙ୍କ ସମ ହୋଇ[illegible] କେହି ।୪୦।

ଇନ୍ଦ୍ର ଚନ୍ଦ୍ର ଆଦି ଯେତେ ଅମରଗଣ ।
ଅବିରତେ ତାହାଙ୍କ ଚରଣେ ଶରଣ । ୪୧ ।

ସ୍ଥିତି ଆଦି ଅନ୍ତର ସେ ଆଦି କାରଣ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ପ୍ରାଣ । ୪୨ ।

ଦେଲେହେଁ ଇତରେ ଚତୁର୍ବର୍ଗ ଦିଅନ୍ତି ।
ତାହାଙ୍କ ପରି ବ୍ରହ୍ମାଣ୍ଡେ ଦାନୀ ନାହାନ୍ତି । ୪୩ ।

ତାହାଙ୍କ ହୃଦରେ ଯେତେ କରୁଣା ଅଛି ।
ସମାନ କରିବାକୁ ତ ନ ଦିଶେ କିଛି । ୪୪ ।

ସମୁଦ୍ରକୁ ବୋଲିବା ସେ ସଂସାରେ ଅଛି ।
ମେରୁ ସେହିରୂପେ ତେଣୁ ନୁହଇ କିଛି । ୪୫ ।

ଅନନ୍ତ ନାମରେ କିଛି ଆକାଶ ଦିଶେ ।
ମେଘ ଅବା ଜଳଧାରି ଯେସନ୍ତ ବରଷେ । ୪୬ ।

ଅଶେଷ କରୁଣା କିଛି ନୁହଇ ଶେଷ ।
ଲେଶ କହି ନ ପାରନ୍ତି ଶେଷ ମହେଶ । ୪୭ ।

କୋଟି କୋଟି ସୂର୍ଯ୍ୟ ସମ ନୋହେ ତେଜକୁ ।
ଅଚ୍ଛାଦେ ଜଣନ୍ତି ସେ କୋଟି ଚନ୍ଦ୍ରକୁ । ୪୮ ।

ମାୟାରେ ଯେସନ୍ତ ନାଗରମାନଙ୍କ ଗୁରୁ ।
ମହିମା ଆରତେ ଡାକିଲେ ଶୁଣନ୍ତି ଦୂରୁ । ୪୯ ।

ନୃଶଂସ ବଂଶକୁ ସେ କରନ୍ତି ବିଧ୍ୱଂସ ।
ଅଳପକେ ଅନ୍ଧାରକୁ ଯେମନ୍ତ ହଂସ । ୫୦ ।

ଦୁଃଖୀ ଲୋକମାନଙ୍କର ଦୁଃଖ ହରନ୍ତି ।
ପ୍ରାତକାଳୁ ଲୋକେ ତାଙ୍କ ନାମ ଧରନ୍ତି । ୫୧ ।

ସମସ୍ତ ଜୀବଙ୍କୁ ସଦାବର୍ତ୍ତି ଦିଅନ୍ତି ।
ଅଭାବକୁ ଦୂର ଭାବେ ବଶ ହୁଅନ୍ତି । ୫୨ ।

ଶଙ୍କ ହୋଇ ଶରଣକୁ ଯେବେ ଆସଇ ।
ଅଭୟ ପଞ୍ଜରେ ପଶି ଭୟ ନାଶଇ । ୫୩ ।

ରସିକ ବିବେକ ମହା—ଧଇର୍ଯ୍ୟବନ୍ତ ।
ସବୁ ରୂପେ ତାହାଙ୍କ ଚରିତ ଅମୃତ । ୫୪ ।

ଅଣୁବନ୍ତ ପଣ ତାହାଙ୍କର ଏମନ୍ତ ।
ଅଣୁହିଁ କହନ୍ତି ମେରୁ ପର୍ବତ ମତ । ୫୫ ।

କୃପା କଟାକ୍ଷରେ ସେ ଯାହାକୁ ଗ୍ରହାନ୍ତି ।
କୋଟି ଇନ୍ଦ୍ର ପଦ ବହି ତାକୁ ଦିଅନ୍ତି । ୫୬ ।

ଶେଷ କରି ନୁହଇ ସେ ତାଙ୍କ ମହିମା ।
ବ୍ରହ୍ମାଙ୍କୁହିଁ ଅଗୋଚର ଯାହା ଗାରିମା । ୫୭ ।

ଭୃତ୍ୟଜନବତ୍ସଲ ସେ ଅନାଥ ପାହି ।
ପତିତ-ପାବନ-ବାନା ଅଛନ୍ତି ବହି । ୫୮ ।

ଅପରାଧୀ ଅପରାଧ କରନ୍ତି କ୍ଷମା ।
ଅତହିଁ ବଡ଼ ପ୍ରଭୁ ସେ ବଚନ କର୍ମୀ । ୫୯ ।

ଜଗନ୍ନାଥ ଦେବ ନରପତି ପରାପ୍ତେ ।
ଚଉଦ ଲୋକରେ ସମ ନାହାନ୍ତି ସାପ୍ତେ । ୬୦ ।

ସବୁ ରଭୁ ସୁଖଭୋଗ ଜାଣନ୍ତି ସେହି ।
ଶ୍ରୀବନ୍ତ ପ୍ରଭୁମାନଙ୍କର ଲକ୍ଷଣ ଏହି । ୬୧ ।

କେ କହିବ ତାହାଙ୍କ ଶ୍ରୀବନ୍ତ ଲକ୍ଷଣ ।
ଶାଚରଣ ଅଷ୍ଟାଦଶ ଚଉରେ ଜାଣ । ୬୨ ।

ଶୀତ ଖରା ବରଷା ଏ ବାର ମାସରେ ।
କେବେ କେବେ ଉତ୍ସବ କରନ୍ତି ସଙ୍ଗରେ । ୬୩ ।

ସୁନ୍ଦର ପଣକୁ କାମ ଦାସ ପରାୟେ ।
ସହଜେତ ସେ ଦେବତାମାନଙ୍କ ସ୍ୱୟେ । ୬୪ ।

ବଳଭଦ୍ର ନାମେ ତାଙ୍କ ଅଗ୍ରଜ ଭ୍ରାତ ।
ମହାବଳବନ୍ତ ମହାସୁନ୍ଦର ଶ୍ୱେତ । ୬୫ ।

ମହା ପ୍ରତାପୀ ସେ ତାଙ୍କ ମହିମା ବଡ଼ ।
ମସ୍ତକରେ ବହିଥାନ୍ତି ନାଗେନ୍ଦ୍ର ଚୂଡ଼ । ୬୬ ।

ଜଗତ ଧରିବାରେ ସେ ଅତ୍ୟନ୍ତ ଦମ୍ଭ ।
ଜଗତରେ ଯେସନେ ଏକା ରଜତ ସ୍ତମ୍ଭ । ୬୭ ।

ମହାଶତ୍ରୁ ମାରଣେ ସେ ମହାପ୍ରବଳ ।
ଶ୍ରୀକରତଳେ ବହନ୍ତି ହଳ ମୂଷଳ । ୬୮ ।

କାଦମ୍ବରୀ ରସରେ ସେ ଅତ୍ୟନ୍ତ ଭୋଳା ।
ଘୂର୍ଣ୍ଣାଇ ପକାଉ ଥାନ୍ତି ଅରୁଣ ଡୋଳା ! ୬୯ ।

କୁନ୍ଦେନ୍ଦୁ ଶଙ୍ଖ କର୍ପୂର କୁମୁଦ କାନ୍ତି ।
ଶ୍ରୀଅଙ୍ଗରେ ତାହାଙ୍କର ସମ ନୁହନ୍ତି । ୭୦

ରଜତ ପର୍ବତ କୃଷ୍ଣ ମେଘ ପରାୟେ ।
କଟିତଟେ ନୀଳାମ୍ବର ଶୋଭାକୁ ପାଏ । ୭୧ ।

ସ୍ଫଟିକ ପର୍ବତ ଶୃଙ୍ଗ ପ୍ରାଏ ଶ୍ରୀଅଙ୍ଗ ।
ଫୁଟ-କୋକନଦ ପ୍ରାଏ ନୟନରଙ୍ଗ । ୭୨ ।

କୋଟି କୋଟି ପୂର୍ଣ୍ଣଚନ୍ଦ୍ର ଜିଣେ ଶ୍ରୀମୁଖ ।
ଅବଲୋକନ ମାତ୍ରକେ ପଳାଏ ଦୁଃଖ । ୭୩ ।

ଶ୍ରୀବଳ ଶ୍ରୀବଳଭଦ୍ର ଭାଇଙ୍କ ସଙ୍ଗେ ।
ରତ୍ନସିଂହାସନେ ଶୋଭେ ବିବିଧ ରଙ୍ଗେ । ୭୪ ।

ଦେଖିବାକୁ ବେନି ଅଙ୍ଗ ଅମ୍ଭାରେ ଏକ ।
ଧନ୍ୟ ଧନ୍ୟ ଧନ୍ୟ ନୀଳାଚଳ ନାୟକ । ୭୫ ।

କମଳା ନାମରେ ତାଙ୍କ ପାଟ ମହେଷୀ ।
ତାହାଙ୍କ ମହିମା କେ କହିବ ବିଶେଷି । ୭୬ ।

କୋଟି କୋଟି ଇନ୍ଦ୍ରାଦି କୁବେର ସମ୍ପତ୍ତି ।
ଯାହା କଟାକ୍ଷକୁ ଅଣେ ଜଗ ଅଛନ୍ତି । ୭୭ ।

ଅଭୟଦାୟିନୀ ଅନ୍ନପୂର୍ଣ୍ଣା ସେ ଦେବୀ ।
ଅଷ୍ଟ ଅଇଶ୍ୱର୍ଯ୍ୟ ପାଇ ଯାହାକୁ ଭାବି । ୭୮ ।

ଦାରିଦ୍ର୍ୟ-ଭଞ୍ଜନ ଭୃତ୍ୟଜନ-ବତ୍ସଳା ।
ପ୍ରସନ୍ନଆନନୀ ପଦ୍ମବାସୀ ସୁଶୀଳା । ୭୯ ।

ଜଗତ ଜନନୀ ଜଗମୋହନ ପ୍ରାଣ ।
କେ ଅବା କହିବ ତାଙ୍କ ସୁନ୍ଦର ପଣ । ୮୦ ।

ସେ ଯାହାକୁ କୃପା କଟାକ୍ଷରେ ଚାହାନ୍ତି ।
ସମସ୍ତ ସୁନ୍ଦର ଯାକ ତହିଁ ଥାଆନ୍ତି । ୮୧ ।

ଜଗନ୍ନାଥ ଦେବ ନରପତିଙ୍କ ପାଦେ ।
ନିରନ୍ତରେ ସେବା ସେ କରନ୍ତି ପ୍ରମୋଦେ । ୮୨ ।

ଏମନ୍ତ ହୋଇ ଯହିଁରେ ଥିବେ ଦମ୍ପତୀ ।
ତହିଁ ଅପୂରୁବ ଅବା କଉଁ ସମ୍ପତ୍ତି । ୮୩ ।

ଯାହା ବୋଲେ ଧନପତି ଅଳକାନାଥ ।
ଅମରାବତୀର ପତି କୁଳଶହାଥ । ୮୪ ।

ସେ ପ୍ରଭୁ ସମ୍ପତ୍ତି କେ କହିବାରେ କ୍ଷମ ।
ଯାହା ନାମେ ପଢନ୍ତଙ୍କୁ ନ ଦଣ୍ଡେ ଯମ । ୮୫ ।

ଏ ସଂସାରେ ଯହିଁ ପ୍ରଭୁ କଥାପ୍ରସଙ୍ଗ ।
କାଳସର୍ପ ଅଘାତଙ୍କୁ କଥାପ୍ରସଙ୍ଗ । ୮୬ ।

ଯାହା ନାମ ସୁନାଶୀର ଗଢ ବାଟଙ୍କୁ ।
ନ ହୁଅଇ ସଂଘାତ ସଂଘାତ ଭେଟଙ୍କୁ । ୮୭ ।

ପକ୍ଷୀରାଜ ନାମେ ତାଙ୍କ ସେ ପାଠ ବାରୁ ।
ସାମ ବେଦ ଉଚ୍ଚାରଇ ଯାହା ଗଳରୁ । ୮୮ ।

ସେ ବାରୁ ଆରୋହି ଯେବେ କରନ୍ତି ବଜେ ।
ମନ-ପବନ ରଙ୍କତ ହୁଅନ୍ତି ଲାଜେ । ୮୯ ।

ଅନୁତ୍ତମ ପ୍ରାସାଦ ହଇ ସୁନ୍ଦର ।
ଅବଲୋକନେ ସମସ୍ତ ମାନସ ହର । ୯୦ ।

ସୁଧାଲେପେ ପୂର୍ଣ୍ଣଚନ୍ଦ୍ର କର ଉଜ୍ଜ୍ୱଳ ।
ଷଟନ କମରେ କର ଦଶେ ମଣ୍ଡଳ । ୯୧ ।

ବିଶ୍ୱକର୍ମାର ଯେ କର୍ମ ଗର୍ବ ଯାର ସେ ।
ଉପମାକୁ ନ ହେଜେ ମାନସେ ମାନସେ । ୯୨ ।

ଯହିଁ ପ୍ରାସାଦ ମସ୍ତକ ପତାକା ନେତ ।
ଉଡ଼ିଁ ଯାଇ ଅମ୍ବରେ କରଇ ଘାତ । ୯୩ ।

ନାଚୁଥି ହସ୍ତକ ହାଥ ପରି ଏ ଗଢ ।
ଉଚ୍ଚେ ଉଠି ପଢ଼ିବାରେ ଏମନ୍ତ ଚନ୍ଦ୍ର । ୯୪ ।

ଆସ ଯାଅ ବୋଲଇ କି ଅର୍ଥିଜନଙ୍କୁ ।
ଏ ବାହାରେ ଅନ ନ ଆସଇ ମନକୁ । ୯୫ ।

ଆରତ ଭଞ୍ଜନ ପ୍ରଭୁ ଶରଣ ଦାତା ।
ଏହି ଅନୁରୂପେ ନାନା ଠାରେ ବକଡା । ୯୬ ।

କେତେ ହେ କହିବି ସେ ପଣ୍ଡାଙ୍କ ଚରିତ ।
କହି ବସିଲେ ପଦ ହୋଇବ ବହୁତ । ୯୭ ।

ବହୁତ ହେଲେ ନ ରୁଚଇ ଅମୃତ ।
ଅମୃତୁଁ ଅଧିକ ଜଗମୋହନ ଗୀତ । ୯୮ ।

ଜଗନ୍ନାଥ ଦେବ ନରପତିଙ୍କ ସଭା ।
ସୁଧର୍ମା ସଭାକୁ ବଳି ଦିଶଇ ଶୋଭା । ୯୯ !

ଉତ୍ତମ କବି ପଣ୍ଡିତ ଗାୟକମାନେ ।
ବନ୍ଧ ବନ୍ଦ୍ୟ ଶୁକଦେବ ପୁରାଣ ଗାନେ । ୧୦୦ ।

ଯେ ଯାହା ବିଦ୍ୟାରେ କୃତମୁଖ ସମସ୍ତେ ।
ଆନ ବିଦ୍ୟାବନ୍ତମାନେ ଅଛନ୍ତି କେତେ । ୧୦୧ ।

ବ୍ରାହ୍ମଣ ନିଯୋଗ ତାହାଙ୍କର ଅନେକ ।
ପଣ୍ଡା ପଶୁପାଳକ ସାମନ୍ତ ସେବକ । ୧୦୨ ।

ମନ୍ତ୍ରୀ ମାରକଣ୍ଡ ଶମ୍ଭୁ ବୁଝାମଣାକୁ ।
ତର୍ଣ୍ଣୀ ଭଇରବେ ଖଣ୍ଡା ନଗ୍ର ଠଣାକୁ । ୧୦୩ ।

ଏମନ୍ତେ ସେ ଜଗନ୍ନାଥ ଦେବ ନୃପତି ।
କମ୍ପୁ କଟକରେ ମହାସୁଖେ ଅଛନ୍ତି । ୧୦୪ ।

କ୍ଷମାଦାତା ଗୁଣଗ୍ରାହୀ ଭଗତ ପ୍ରିୟ ।
ତାହାର ବିଷୟରେ ନୃହନ୍ତି ନିର୍ଦ୍ଦୟ । ୧୦୫ ।

ଦୁଃଖୀଲୋକ ଜଣାଇଲେ ଅଗ ସୁଗତି ।
ନ କହିଲେ ଲୋକର ହୃଦୟ ଜାଣନ୍ତି । ୧୦୬ ।

ଅଛି ବଡ଼ ବିବେକ ସେ ଦେବାଧିରାଜ ।
ଅନ୍ୟେ ଜନମାନେ ଏକା ତାହାଙ୍କୁ ଭଜ । ୧୦୭ ।

ଅବଶ୍ୟ ତାରିବେ ସେ ଅନନ୍ତ ସଂସାରୁ ।
ଅଛନ୍ତି ଦାରୁଣ କାଳଦଣ୍ଡ ହିଂସାରୁ । ୧୦୮ ।

ଦୀନକୃଷ୍ଣ ବୋଲି ବୋଲି ହେଲା ନ କର ।
କର ନ କର ଯେମନ୍ତ ଇଚ୍ଛା ତୁମ୍ଭର । ୧୦୯ ।

ମଧୁମାଚ୍ଛି ମୁଖୁଁ ମଧୁ ହେଲେ ବାହାର ।
ତାହା ନିନ୍ଦି କେହି ନ କରଇ ଆହାର । ୧୧୦ ।

ପଙ୍କୁ ଜାତ ହେଲେ ପଦ୍ମ ସବୁର ପ୍ରିୟ ।
ଏ କଥା ବିଗ୍ୟର ସୁଅ ଶୁଦ୍ଧ ହୃଦୟ । ୧୧୧ ।

---

## ଦ୍ୱିତୀୟ ଛାନ୍ଦ

ରାଗ—କଲ୍ୟାଣ ଅହାରି

( ଶ୍ରେଷ୍ଠି ବାଣୀରେ ଗାଇବ )

ଅହେ ସାଧୁଜନମାନେ ଏବେ ଶୁଣ ଏକମନେ
ଜଗନ୍ନାଥ ଦେବ ନରପତିଙ୍କ ନୀତି
ରାତ୍ର ଥାଉଁ ଅପହ୍ନୁଡ଼ ହୋଇ ମଲ୍ୟମଙ୍କୁ ବଡ଼
ଉତ୍ସାହରେ ସିଂହାସନେ ବିଜେ କରନ୍ତି
ଏଥିଅନ୍ତେ ସେବକେ ଆସି
କବାଟ ଫିଟାଇ ଧୀରେ ଭିତରେ ପଶି । ୧ ।

ଯେ ଯାହା ସେବା ଅବୋର ରହନ୍ତି ସେ ପଟୁଆ
ମଲ୍ୟମ ହୁଅନ୍ତି ପ୍ରଭୁ ଜଗତପତି
ନବ ପଞ୍ଚକ ତଡପ ସମୁଦ୍ର ଫେନ ସ୍ୱରୂପ
କାଠି ଲାଗି ଜମିନ୍ତରେ ଲାଗି ହୁଅନ୍ତି
ତହୁଁ ଶ୍ରୀଫଳକୁ ଅନାଇ
ତଉକ ଉପରେ ବିଜେ କରନ୍ତି ଯାଇଁ । ୨ ।

ଦାନ୍ତକାଠି ଗୁଆଗୁଣ୍ଡ ଲବଣୀ ତ୍ରିଫଳା ପିଣ୍ଡ
ସୁବାସଜଳ ଦର୍ପଣ କୁଣ୍ଡ ଅଣନ୍ତି
ଖଟଣି ସାମନ୍ତମାନେ ଉଚିତ ବିଧି ବିଧାନେ
କାଠି ଲାଗି ମାଜଣା ସେବାକୁ ବସନ୍ତି
ଏଥିଅନ୍ତେ ଜଗନ୍ନିବାସ
ଦିବ୍ୟ ବାସ ଲାଗି ହୋଇ ହୁଅନ୍ତି ବେଶ । ୩ ।

ସେ ସୁବେଶ ଶୋଭା ଶୁହି    ଉପମା ନ ଦିଶେ କାହିଁ
କେବଳ ମାଧବ ମୋହ ହୁଅଇ ମନ
ବଚନକୁ ଅଗୋଚର    ପୁଲକ ଉଠେ ଶରୀର
ଅପଲକ ହୋଇ ରହେ ବେନି ନୟନ
ଧାତକ ଖଣ୍ଡୁଆ ଦୋଶୋଡ଼ା
ବାତଦରୁ ବତନ ସେ ଧଇର୍ଯ୍ୟ ବୁଡ଼ା । ୪ ।

ସୁବର୍ଣ୍ଣ କେତକୀ ଚୋପ    ଦିଶଇ ଯେମନ୍ତ ଚୋପ
ସେହି ରୂପେ କରଇ ସେ ମନକୁ ଲୋପ
ମଣି କୁଣ୍ଡଳ ମେଖଳା    କଙ୍କଣ ବାହୁଟି ମାଳା
ଏକେ ଏକେ ମହାସୁଖପଦନ ପରି
ଯେଉଁ ବେଶେ ଦେବାଧିରାଜ
ସେହି ରୂପେ ଭାଇ ବଳଭଦ୍ରଙ୍କ ସଜ । ୫ ।

ଅଭେଦ ଭାବରୁ କର    ଏକାବେଳେ ମୀଳ ସାର
ଏକାବେଳେ ମଣୋହରେ ବଜେ କରନ୍ତି
ଏ ପୀତ ସେ ନୀଳାମ୍ବର    ହେଲେହେଁ ମାଧ ଅମ୍ବର
ବାସ ଅନ୍ତରୂପରେ ସେ ଲାଗି ହୁଅନ୍ତି
ଏକ ଆତ୍ମା ବେନି ଶରୀର
ଏ ରୂପେ ସୁଭଦ୍ରା ଭଦ୍ରା ଭଉଣୀ ତାଙ୍କର । ୬ ।

ଏମନ୍ତେ ସେ ଅବକାଶ    ହୁଅନ୍ତେ ଜଗନ୍ନିବାସ
ଅନେକ ଲୋକ ପ୍ରବେଶ ହୁଅନ୍ତି ଆସି
କେ ଅଲଟ କେ ଚାମର    କେ ପଙ୍ଖା ନାନାପ୍ରକାର
ଘାଣୀ ଚବା ମାନ ଲେଇ ଯୋଗ ବଇଷି

ଆନନ୍ଦେ ଦର୍ଶନ କରନ୍ତି
ଅଶେଷ ଦୁରିତ ଦୁଃଖମାନ ହରନ୍ତି । ୭ ।

କେ ହରଷେ ନୃତ୍ୟ କରି କେ ବୋଲନ୍ତି ହରି ହରି
ନିସ୍ତରିଲି ନିସ୍ତରିଲି କେ ଜପେ ଜପେ
ଏହି ପ୍ରକାରେ ଗହଳ ଚହଳ ଅତି ପ୍ରବଳ
ଶ୍ରୀ ଜଗମୋହନରୁ ସିଂହାସନ ଯାଏ
ନୀଳଗିରି ନବର ଯାକ
ପୂରି ରହିଥାନ୍ତି ନାନା ପ୍ରକାର ଲୋକ । ୮ ।

ବ୍ରହ୍ମାଦି ଶଙ୍କର ଦେବେ ଯେ ଯାହା ଭକତି ଭାବେ
ଶୂଦ୍ର ମଧ୍ୟେ ଶୁଦ୍ଧଲା ପ୍ରାୟେ ଥାଆନ୍ତି
ଆନ ଆନ ଦେବାଦେବୀ ଧରି ମାନବଙ୍କ ଛବି
ଜଗନ୍ନାଥ ଦେବଙ୍କ, ଦର୍ଶନ ପାଆନ୍ତି
ଧନ୍ୟ ଧନ୍ୟ ଧନ୍ୟ ସେ ଶୋଭା
ଲାଗିଥାଉ ଦେଖିବାର ସେ କାଳ ଶୋଭା ।୯।

ଅବକାଶ ଶେଷେ ଡାକ ପାଡ଼ନ୍ତେ ବାହାର ଲୋକ
ବେଢ଼ ଧରି ଦୁଆରେ ରହନ୍ତି ଦୁଆରୀ
ଗୋପାଳ ବଲ୍ଲଭ ନାମ ଶୀତଳ ଭୋଗ ଉତ୍ତମ
ମଣୋହି କରନ୍ତି ପ୍ରଭୁ ଶାରଙ୍ଗଧାରୀ
ମଣ୍ଡା କୋରା ଲବଣୀ ଦହି
ଶାକର ସର ପାପୁଡ଼ି ଟିଙ୍ଗାରି ଖଇ । ୧୦ ।

ଏ ଆଦି ଅନେକ ଦ୍ରବ୍ୟ ମଣୋହି ବଢ଼ାଇ ଦେବ
ଆଚମନ ଯାଇ ସେ ଶ୍ରୀମୁଖ ପୋଛନ୍ତି

ଶ୍ରୀ ମହାପ୍ରସାଦ ଅଶେଷ    ସେବକମାନେ ହରଷେ
ଯେ ଯାହା ଅନୁରୂପରେ ଯାଇ ଗ୍ରହାନ୍ତି
ଗ୍ରହ୍ନ ଛନ୍ତି ଜଗଦୀଶର
ଛାମୁରେ ଯେ ହେଉଥାଇ କୈବଲ୍ୟ ଜୁର ।୧୧।

ଅହା ସେ ସମୟ ଦେଖି    ମନ ହୁଏ ମହାସୁଖୀ
ମନ ସେ ଜାଣଇ ଜଗବନ୍ଧୁ ଜାଣନ୍ତି
ଏହା ଦେଖୁ ଦେଖୁ ପ୍ରାଣୀ    ଅବିବେକ ଭାବୁ ପୁଣି
ଇନ୍ଦ୍ର ସମ୍ପତ୍ତିକୁ ବଡ଼ କରି ଗଣନ୍ତି
ମାନବ ଶରୀରକୁ ପାଇ
ଏଡ଼େ ସୁଖ ଥାଉ ମନ ଆନକୁ ଦେଇ । ୧୨ ।

ଜପ ତପ ଦାନ ତୀର୍ଥ    ପ୍ରମାଣ ଏ ପରମାର୍ଥ
କରୁଥିବ ଜଗନ୍ନାଥ ଦର୍ଶନ ଯାଏ
ନାନା ହଠ ନଟ କୁଟ    ସେହାଦ ବଣିଜ ବାଟ
ଉଦର ନିମନ୍ତେ ସିନା ନାନା ଉପାଏ
ଅନ୍ଧାରକୁ ନାଶେ ପ୍ରଦୀପ
ଆନନ୍ଦ-କନ୍ଦ ଦର୍ଶନେ କି ମହାପାପ ? । ୧୩ ।

ଏବେ ଶୁଣ ଦ୍ରବ୍ୟ ରସ    ସକଳ ଧୂପ ପ୍ରବେଶ
ହେବା ସମୟରେ ଲୋକ ବାହାର ହୁଏ
ପାଳ ପଡିହାରି ଯାଇ    ଯେ ଯାହା ସେବା କରଇ
ମଣୋହିରେ ବଢେ ପ୍ରଭୁ ଦେବାଧିଦେବେ
ନାଡୁ ଗଜା କଦଳୀ ପୁଲି
ନାନାରୂପେ ପିଠା ସୁଧାରସକୁ ବଳି । ୧୪ ।

ଖେଚୁଡ଼ି ଦରବ୍ୟ ଅରଡ଼ା    ଅନେକ ପ୍ରକାରେ ବଢ଼ା
ବଢ଼ା ହୋଇ ଦରବ୍ୟ ବ୍ୟଞ୍ଜନାଦି ସେ ଯେତେ
ଅଣେ ଅଣେ ବୋଲି ଭାବ    ଅସଲୁ ପାଖକୁ ଯାବ
ନେଉଥାନ୍ତି ମହା ସୂପକାରେ ତା କେତେ
ଯହିଁ ଦେବରାଜ ଭୃଗୁତା
ବାଢିବାକୁ ତହିଁ କ୍ଷୀରସାଗର ସୁତା । ୧୫ ।

ଧୂପଦୀପ ଅନ୍ତେ ଝେରା    ପଡିବା ଶେଷକୁ ହୋରା
ହେଉଥାନ୍ତି ଲୋକେ ଦେଖିବାକୁ ଆଳତି
ଚନ୍ଦ୍ରକୁ ଚକୋର ପ୍ରାଏ    ହୋଇ ଏକତାନ ଲଏ
କବାଟ ପିଟିଲେ ଜଗଜ୍ଜ୍ୟୋତି ଦେଖନ୍ତି ।
ଜୟ ଜୟ ଶବଦ ଗୋଳ
ପ୍ରତେ ହୁଏ ସେ ଜଳନିଧି ଉଚ୍ଛୁଳ । ୧୬ ।

ସେ ଆଳତି ବନ୍ଦାପନା    ଶ୍ରୀମୁଖ ଜ୍ୟୋତି ଜ୍ୟୋତ୍ସ୍ନା
ଦେଖିବାର ଲାଗିଥାଉ ଜନ୍ମ ଜନ୍ମାନ୍ତେ
ଜନନୀ ଜଠର ଜଳେ    ସ୍ନାନ ନାହିଁ ଅଉ ବେଳେ
ଏମନ୍ତ ବିଗ୍ରହ ମନ ନାଶନ ଚନ୍ତେ
ତହିଁ ହୁଏ ସାହାଣ ମେଳା
ଅହା ସେ ସମୟ ସୁଖ ନାହିଁ ଦେଖିଲା । ୧୭

କେ କେତେ ରୂପେ ଜଣାନ୍ତି    କେ କେତେ ସ୍ତୁତି ଶୁଣାନ୍ତି
କେ କେତେ ପ୍ରକାରେ ତହିଁ କରେ ଗୁହାରି
ଯେତେ ଜଣାଇଲେ ବଳ    ପଛ ହୋଇ ରହ
ବୋଲିବାକୁ ଶକ୍ୟ ତହିଁ ନାହିଁ କାହାରି ।

ସହଜେ ତ ଅଷ୍ଟାବଧାନୀ
ସବୁର କଥା ଯେବନ୍ତି ଶ୍ରବଣ ଯୋଗ । ୧୮ ।

ଏମନ୍ତେ ଥୋକା ଏ ବେଳ ଉତ୍ତାରେ ଭକେ ଗହଳ
ମଲ୍ୟମ ହୋଇ ସ୍ୱବେଶେ ବଜେ କରନ୍ତି
ବହୁତ ମୂଲ୍ୟ ଅମ୍ବର ଦଶେ ଅଭ ଅଡ଼ମ୍ବର
ଉତ୍ତମ କର ଗାଅଙ୍ଗେ ଲାଗି ହୁଅନ୍ତି
ଫୁଲ୍ଲ ଚୂଲ ମାଲ ସୁନ୍ଦର
ଫୁଲୁ ଥାଇ ହୃଦସ୍ପୃ ଦେଖିବା ଲୋକର । ୧୯ ।

ଏମନ୍ତେ ବେଶ ବଢ଼ାଇ ସମସ୍ତ ଲୋକ କଢ଼ାଇ
ମଣୋହରେ ବେନ ଭାଇ ବଜେ କରନ୍ତି
ଉତ୍ତମ ଅନ୍ନ ବ୍ୟଞ୍ଜନ ଈଶ୍ୱର ମନରଞ୍ଜନ
ମହାସୂପକାରମାନେ ନେଇ କରନ୍ତି
ନାଡ଼ୁ ଲଡ଼ୁ ଡାଲମ୍ବ ଗଜା
କାକରା ଅଳଷା କାନ୍ତି କଦଳୀ ଭଜା । ୨୦ ।

ଘୃତପୁଳି ଶରପୁଳି ଅମୃତର ରସାବଳୀ
ପୁନ ହଂସକେଳି ଆଦ କର୍ପୂରକେଳି
ଖିର ଖିରଶା ଅମୃତ ଦୁଧ ଗୋଟିକା ବହୁତ
ଚସାଦ୍ୟ ଆଦ ଏଥି ଥାଅନ୍ତି ମିଳି
ସର ଇକ୍ଷୁ ପଇଡ଼ ନଦା
ଦଧିରସ ସଢ଼ୟା ଯେ ମନ ବନ୍ଦା । ୨୧ ।

ଠାକୁଆ ପାରକାଢ଼କ ଖଇରଚୂଆ ଅନେକ
ଘୋଲ ବଡ଼ା ଅଦ କେତେ କେତେ ହୁଅନ୍ତି

୨ ଜଗମୋହନ ଛନ୍ଦ

ମହାପ୍ରସାଦ ତା ନେଇ ଅସଇ ପତ୍ରରେ ଥୋଇ
ପତ୍ର ପତ୍ର କରି ପତ୍ରବଡ଼ୁ ଥୁଅନ୍ତି
ଏହିରୂପେ ଭୋଗ ଅପାର
ମଣୋହି କରନ୍ତି ପ୍ରଭୁ ଜଗଦୀଶ୍ୱର । ୧୨ ।

ଏମନ୍ତେ ହୁଇ ପ୍ରହର ଧୂପ ଶେଷ ଦେବବର
ମଲ୍ୟମ ହୋଇ ପ୍ରବେଶ ହୁଅନ୍ତି ପୁଣି
ପୁରୁଷୋତ୍ତମ ବଲ୍ଲଭ ବଢାଇ ଦେବ ବଲ୍ଲଭ
ଛତ୍ର ବଢ଼ାବନ୍ତି ଲୋକ ହୃଦସ୍ତ ଜାଣି
ପହୁଡ଼ବା ବେଲ ଜାଣନ୍ତି
ଖଟ ଶେଜ ଶେଜ ଖଟ ଲୋକେ ଅଣନ୍ତି । ୧୩ ।

ବିବିଧ ବନ୍ଧ ପିଭୁଲ ବିଚିତ୍ର ବମରେ ଝୁଲ
ନାନା ରତ୍ନ ମଣି ମାଣିକ୍ୟରେ ମଣ୍ଡିତ
ଯାର ତାହାର ତାରକୁ ଚର୍ଦନ କରିବାରକୁ
ବରବାରେ ଏକେ ଏକେ ମହା ପଣ୍ଡିତ
କେ କହିବ ସେ ଖଟ ଶୋଭା
ନଷ୍ଟ ହୋଇ ରହେ ମନ ନୟନ ଲୋଭା । ୧୪ ।

ତଥିପଟ୍ଟ ପାଟ ତୋଳ ବିବିଧ ବର୍ଣ୍ଣେ ମୂଲ୍ଲ
ଉପରେ ଶୁକଲ ଝୀନ ବାସ ପକାଇ
ଖଟ ଶେଯ ମେଳିକାପେ ଶେଜ ସଜାଇ ଏରୂପେ
ଆସନ୍ତି ଦର୍ଜନ କର ଅଲଗା ହୋଇ
ପହୁଡ଼ନ୍ତି ଦେବାଧିଦେବ
ଏଥିଅନ୍ତେ ଶୁଣ ଲୋଡ଼ ବ୍ୟବସ୍ଥା ଭାବ । ୧୫ ।

ଅନେକ ଧନ ବୈଭବ                    ଅନାଥ ଅବଶ୍ୟ ଦେବ
ଯୋଗୀ ସନ୍ନ୍ୟାସୀ ଯାହାଙ୍କୁ ଯେମନ୍ତ ଇଚ୍ଛା
ଦିଅନ୍ତି ତାଙ୍କୁ ସେ ରୂପେ          ଏ ବାହାରେ ନାନା ରୂପେ
ଦିଅନ୍ତି ଦୁଃଖୀ ଦରିଦ୍ର ଭକ୍ତଙ୍କ ପୁଞ୍ଜା
ଦେବାଙ୍କୁ ଏ କୈବଲ୍ୟ ଛତ୍ର
ଜଗନ୍ନାଥ ଦେବ ନୃପବର ଯେ ପାତ୍ର । ୧୬ ।

ଆଉ ଯେ ନ ଥିବ କାହିଁ              ବ୍ରହ୍ମାଣ୍ଡେ ଦେଖିଲ୍ୟ ନାହିଁ
ନୋହିଛି ନୋହିବ ଏଡ଼େ ବଡ଼ ଠାକୁର
ଏହି ଯେଣୁ ସିନା ଭାବେ             ବ୍ରହ୍ମାଦି ଶଙ୍କର ଦେବେ
କଙ୍କର ମତଙ୍କୁ ସୀଉଳାର ତାଙ୍କର
ଆମ୍ଭେମାନେ ଏମନ୍ତ ଜଡ଼
କ୍ଷଣଭଙ୍ଗ ଦେହ ବହି ବୋଲାଉ ବଡ଼ । ୧୭ ।

ଏବେ ଅପରାହ୍ଣ ହେବା                  ପ୍ରସଙ୍ଗ ଶୁଣ କହିବା
ଅସ୍ତ ଅଚଳରେ ଦିନବନ୍ଧୁ ପ୍ରବେଶ
କମଳ ହାସ୍ୟ ମୁଦ୍ରିତ                    କୁମୁଦ ମୃଦ ବିଦିତ
ଚକ୍ରବାକ ଚକ୍ରବାକୀ ସଙ୍ଗ ବିନ୍ୟାସ
ଅନ୍ତରଙ୍କୁ ହୋଇ ଦିବସ
ପୁରେ ପୁରେ ପ୍ରଦୀପ ପ୍ରତାପ ପ୍ରକାଶ । ୧୮ ।

ସନ୍ଧ୍ୟା ସ୍ମରନ୍ତି ଦ୍ୱିଜେ              ଦେବ ପୁରେ ଶଙ୍ଖ ବାଜେ
ଘୋର ମନ୍ଦ ତାରେ ସେ ଏମନ୍ତ କହଇ
ଧନ ଲୋକେ ନାହିଁ ନାହି              ଅନାଥ ଲୋକଙ୍କୁ ପାହି
ଜଗନ୍ନାଥ ଦେବରାଜ ପରିଏ ହୋଇ

ଏହା ଶୁଣି ଶ୍ରୀ ଦେବରାଜେ
ଅପହୃତ ହୋଇ ଅବକାଶରେ ରଜେ । ୨୯ ।

ଅଳପ ନିଦ ଅଳସେ ନୟନ ଘୂରିଛି ହସେ
ଶ୍ରୀମୁଖଚନ୍ଦ୍ର ଦିଶଇ ଅତି ସୁନ୍ଦର
ଜନ ହୃଦୟ କୁମୁଦ କୁମୁଦ ସୁଖ ସମ୍ପଦ
ନୟନ ଚକୋରଙ୍କର ଆନନ୍ଦପୂର
ଜୟ ଜୟ ଶବଦ ଗୋଳ
ପ୍ରଚଣ୍ଡ ହୁଅଇ ସେ ଘୀରଦିକ୍ ଉଚ୍ଛୁଳ । ୩୦ ।

ଧନେକ ଦୀପ ବହୁତ ଜଳନ୍ତି ସେ ଧାଡ଼ି ଧାଡ଼ି
ରାତହିଁ ଦିବସ ପରି ହୋଇ ପ୍ରକାଶେ
ଚନ୍ଦ୍ରଦୀପ ଅବା କେତେ ଚନ୍ଦ୍ର ଉଦିଆଇ ସତେ
ଚନ୍ଦ୍ର ଉଦେକାଳେ ଚନ୍ଦ୍ରଉଦିଆ ନାଶେ
ଏକେ ସେ ଯେ ଜଗମୋହନ
ଆମୋଦେ ଆମୋଦ କରେ ଜଗତ ମନ । ୩୧ ।

ଅନେକ ଅଲଟ ପଙ୍ଖା ଗ୍ରମରେ ନୃହଇ ଲେଖା
ପଡ଼ିବା ଗହଳେ ପଶି ଯାଇ ନ ହଇ
ଅନେକ ଦୂରରେ ଥାଇ ଗ୍ରହିଁଲେ ଦର୍ଶନ ପାଇ
ପରମ ଆନନ୍ଦ ସୁଖ ମନକୁ ଦେଇ
ଦ୍ୱାରେ ରହିଥାନ୍ତି ଦୁଆରୀ
ବଡ଼ ବଡ଼ ଯୋଡ଼ା ବେତ-ମାନଙ୍କୁ ଧରି । ୩୨ ।

ଖଟ ଶେଯ ଲୋକେ ଯାଇ ଖଟ ଶେଯ ଘେନିଯାଇ
ଯତ୍ନ କରି ଯେ ଯାହାର ସ୍ଥାନେ ରଖନ୍ତି

ଶୃଙ୍ଗଡ଼ା ସେବକ ନେଇ ଗନ୍ଧା ଶୃଙ୍ଗଡ଼ୁ ଖଟଇ
ଖଟଣି ସାମନ୍ତମାନେ ସେବା କରନ୍ତି
ଆହା ସେ ସୁବେଶ ଚରିତ
ସୁମରି ଭାବିଲେ ନାଶ ହୁଏ ଦୁରିତ । ୩୩ ।
ବିବିଧ କୁସୁମ ଗଭା ଦିଶଇ କେମନ୍ତ ଶୋଭା
ତାହା କେ ବଚନେ କହି କରିବ ଶେଷ
ସହସ୍ର ମୁଖରେ ଶେଷ ସହସ୍ରେ ବର୍ଷରେ ଶେଷ
କରି ନ ପାରିବେ ଯେଉଁ ଶୋଭାରୁ ଲେଶ
ଆହା ସେ ଶ୍ରୀମୁଖ ମଣ୍ଡଳ
ଯାହା ଲାଗି ଶୋଭା ଅବତଂସ କୁଣ୍ଡଳ । ୩୪ ।
ଯେଉଁ ଶ୍ରୀଅଙ୍ଗ ଭୂଷଣ— ମାନଙ୍କର ବିଭୂଷଣ
ତହିଁ ନିଜ ମଣ୍ଡନକୁ ମଣ୍ଡନ କରି
କେବଳ ଈଶ୍ୱର ଅଙ୍ଗ ହେଲେ ଆଭରଣ ଭଙ୍ଗ
ଆଉ କି ଅଧିକ ବାଳସମ୍ପାଓ ଶିରୀ
ଦୁହେଁ ଦୁହିଁଙ୍କିନ୍ତ ଭୂଷଣ
ଚନ୍ଦ୍ର ନିଶା ଘନ ବିଦୁ ପରିଏ ଜାଣ । ୩୫ ।
ଏମନ୍ତେ ଅମୂଲ୍ୟ ବେଶ ବଢ଼ାଇ ଜଗନ୍ନିବାସ
ମଣୋହି କରନ୍ତି ସଙ୍ଗେ ଅଗ୍ରଜ ସେନ
ଅନେକ ରୂପେ ଅମୃତ ମଣୋହି ଦ୍ରବ୍ୟ ବହୁତ
ଷଡ଼ରସେ ରଚିଥାନ୍ତି ସିନ୍ଧୁନନ୍ଦନୀ
କେତେ ତା କହିବା ବିସ୍ତାର
ମଣୋହି ଶେଷରେ ଯାହା ଲାଗି ନିସ୍ତାର । ୩୬ ।
ଭୋଗ ଶେଷେ ଆଚମନ ବଢ଼ାଇ ଜଗମୋହନ
ଶ୍ରୀମୁଖ ପୋଛି ବଢ଼ାଇ ବଢ଼ଥା ଲାଗି

ବଡ଼ ଅବକାଶ ବେଳ ବଡ଼ ଗହଳ ଚହଳ
ଅହା ଜନ୍ମେ ଜନ୍ମେ ଥାଉ ସେ ସୁଖ ଲାଗି
ବିବିଧ ପ୍ରକାରେ ସଙ୍ଗୀତ
ମାର୍ଗଦେଶୀ ମିଶି ହେଉଥାଇ ବହୁତ । ୩୭ ।

ତାଳ ମର୍ଦ୍ଦଳ ବଇଁଶୀ ବୀଣା ରବା ଯନ୍ତ୍ର ମିଶି
ମଧୁର ସୁସ୍ୱର ଗୀତ ମୋହେ ମନକୁ
ଗୂଢ଼ ପ୍ରବନ୍ଧ ପ୍ରବନ୍ଧ ଷଟ୍ପାନାଗ ଆଦ ବନ୍ଧ
ଗୀତରେ ଦିଶାଇ ସ୍ୱର ଲପ୍ତମାନଙ୍କୁ
କେତେରୂପେ କେ କରେ ଗାନ
ଏକମନେ ସାବଧାନ ଜଗମୋହନ । ୩୮ ।

ରସିକ ନାଗର ବର ରମାକଣ୍ଠ-ମୋତିହାର
ଅତୁଲ୍ୟ ଅମୂଲ୍ୟ ମରକତ ନାୟକ
ଅମର କୁମୁଦ ଚନ୍ଦ୍ର ଅରିକରୀ ମୃଗଇନ୍ଦ୍ର
ସମସ୍ତ ଲୋକଙ୍କ ଆନନ୍ଦ ସୁଖ ଏକ
ସବୁଠାରେ ସମାନ ଗୃହିଁ
ଏମନ୍ତ ହୋଇ ଲୋକଙ୍କୁ ନ ଥିବ ପାହି । ୩୯ ।

ଯେମନ୍ତେ ସେ ପ୍ରଭୁ ପଣ ସେହି ଅନୁରୂପେ ଗୁଣ
ଭୁଜବଳ ଅନୁରୂପେ ଦଅନ୍ତି ଦାନ
ଏମନ୍ତ ନେତ ଅକ୍ଷତ ଗୃହିଁବାର ସେହିମତ
ଭାବେ ବସ ଅଭାବକୁ ଅତହିଁ ମାନ
ଅହେ ଜନେ ସମସ୍ତେ ତେଜ
ଦୀନକୃଷ୍ଣ ବୋଲେ ସେହି ପ୍ରଭୁଙ୍କୁ ଭଜ । ୪୦ ।

# ତୃତୀୟ ଛାନ୍ଦ

( ରାଗ କଲ୍ୟାଣ ଅହାରୀ)

ଏଥୁ ଅନନ୍ତରେ ସୁସାଧୁ ଜନେ
ଆନନ୍ଦ ମନ ହୋଇ ଏକଭାବେ ।
ଉଲାଗି ହୋଇ ସନ୍ଧ୍ୟାଧୂପ ବେଶ
ବଡ଼ଶିଂହାରେ ବଳେ ଜଗଦୀଶ ।
ବଢନ୍ତ ବାସ କର୍ପୂର ହେଉଛି
ବଢନ୍ତେ ଲାଗି ହୁଅନ୍ତି ଯେ କାଛି ।
ଏଥୁ ଉତ୍ତାରୁ ଚଳୁସମ ଲାଗି
ଗୃହେଁ ଯେ ଥାନ୍ତି ଲୋକେ ଯାହା ଜଗି
ଚିତ୍ତରେ ହେଉଥାଇଁ ଯେଉଁ ସୁଖ
ମନ ଜାଣଇ ଜାଣେ ପଦ୍ମମୁଖ । ୫ ।
ଛଇଲବର ପଣରେ କେ ପଉ
ପରଦ୍ୱରଣ ଝୀନ ପଚନ୍ଦ କରୁ ।
ଅନେକ ଫୁଲ ଅନେକ ପ୍ରକାରେ
ଆସି ଯେ ଥାଇ ଅନେକ ଯତ୍ନରେ ।
ଅନେକ ପ୍ରକାରେ ତାଙ୍କ ବାସନା
ଏ ଦେନ ଶ୍ରୀଅଙ୍ଗେ ଲାଗନ୍ତି ସିନା ।
ଅହା ସେ ଧନ୍ୟ କର୍ପୂର ଜାଇ ।
ଅଧର ତଳେ କି ଭାଗ୍ୟରୁ ଥାଇ ।
କେ ରହେ ଶିରେ କେ ରହେ ହୃଦରେ
କେ ରହେ ଲଲାଟ ପଟ୍ଟ ତଟରେ । ୧୦ ।

କେ ଯାଇ ଲାଗେ ଅଭୟ ଚରଣେ
କେ ରହେ କରେ ସୁବାସନ ଗୁଣେ ।
କାହିଁକି ତପ କଲେ ସେ ସୁମନେ
କୈବଲ୍ୟ ଦାନୀ ଯେମନ୍ତ ସୁମନେ ।
ଏବେ ଛଇଳ ଫୁଲବିନୋଦିଆ
ଫୁଲ ବେଶରେ ଫୁଲୁ ଥାଇ ହୁଅ ।
ଫୁରୁଣାରେ ଲୋକେ ନେଇ ଭ୍ରମର
ପାଇ ଲୋଭେ ଚୁମ୍ବି ନୋହେ ଅନ୍ତର ।
ଫୁଲରେ ଅଛି ବଡ଼ ସରାଗ
ନାନାରୂପେ ଫୁଲେ କରନ୍ତି ଭୋଗ ।୧୯।
ଗର୍ଭକୁ ଆଦ ବେଷ୍ଟିତ ଲମ୍ବିତ
ଫୁଲମାଳରେ ସହଜେ ବନ୍ଦିତ ।
ଫୁଲରେ ଗୃହବଧୂ ଆଭରଣ
ଆବଧ ବନ୍ଧ ଅନୋପ କ୍ଷେପଣ ।
ଫୁଲର ଭାବ ଜାଣନ୍ତି ସେହି
ଫୁଲକୁ ସ୍ନେହେ କରିଅଛନ୍ତି ବହି ।
ଫୁଲ କୁଣ୍ଡଳ, ଫୁଲରେ ମୁକୁଟ
ଫୁଲ ଅଙ୍ଗଦ କଙ୍କଣ ପ୍ରକଟ !
ଫୁଲେ ଫୁଲେ ହାର ପଦକ ଶୋହେ
ଫୁଲ ଅଲଙ୍କାର ଜଗତ ମୋହେ । ୨୦ ।
ଫୁଲକୁ ଭୁଲ ନୋହଇଟି କେହି
ଫୁଲ୍ଲାରବିନ୍ଦ ନେଇ ଥାନ୍ତି ବହି ।
ଫୁଲ ଛତ୍ର ଫୁଲ ପଙ୍ଖା ଚାମର

ଫୁଲ ଗୁନ୍ଥା ଅଲଟ ଫୁଲର ।
ଫୁଲ ବଉଳଣ ଦୁଏ ଷେଯରେ
ଫୁଲ ବୃଷ୍ଟି ଦେବ କରନ୍ତି ଶିରେ ।
ଯେତ୍ତ ବା କେତେ କହିବ ମୁଁ ତାହା
ଫମ୍ପା ମଚୂର ମାଲଗିର ନାହା ।
ଶ୍ରୀ ବଳଭଦ୍ର ଦେବ ହୋଇ ଏହି ବେଶ
ବାରୁଣୀ ବାସରେ ଅଛ ଅଠବେଶ । ୨୫ ।
ରଜତ ପର୍ବତ ଅଙ୍ଗ ସୁନ୍ଦର
ସୁମିତ ନେହ ଅଛି ମନୋହର ।
ଶିରରେ ଫଣୀମଣି ଯେ ବସ୍ତନେ
ତହିଁ ଉପରେ ଫୁଲଚୂଲ ସାଜେ ।
କଚଟ ବାହୁଟ ହାର ପଦକ
କୁଣ୍ଡଳ ଆଦ ଫୁଲରେ ସ୍ପେଛେକ ।
ଶ୍ରୀମୁଖ ବେଢ଼ିଣ ଅଳକାପନ୍ତି
ଅଛି ସୁନ୍ଦରୁ ସୁନ୍ଦର ଦିଶନ୍ତି ।
ଆହା ସେ ଶୋଭା ଅଛି ଅଲକ୍ଷ୍ୟ
କେ ଅଛି ତାହାକୁ କହିବା ଲକ୍ଷ୍ୟ ।୩୦।
ଏମନ୍ତେ ବେନି ଭାଇ ବେଶ ହୋଇ
ଶ୍ରୀକର୍ପୂର ଚୂର ଅଧରେ ଦେଇ ।
ଅଳପ ମନ୍ଦ ହସ ହସ ହୋଇ
ଅମୃତ ଦୃଷ୍ଟି ଲୋକଙ୍କୁ ପକାଇ ।
ବଜପ୍ରେ ଚହି ସିଂହାସନ ପରେ
ଲୋକ ପୃଷ୍ଠଅଶ୍ରୁ ରହେ ସମ୍ମୁରେ ।

ବଡ଼ ଶିଙ୍ଗାର ହୁଅନ୍ତେ ଗୋବନ
ନୃତ୍ୟ କରନ୍ତି ଅପସରୀ ବୃନ୍ଦ ।
ତାଳ ମର୍ଦ୍ଦଳ ଯନ୍ତ୍ରରବା ଧରି
ସ୍ୱରେ ଗୀତ ଗାବନ୍ତି ସୁନ୍ଦରୀ । ୩୫ ।
ନାଗରୀଙ୍କ ଅଭିନବ ବୟସୀ
ନାଗର ମନମୀନକୁ ବଡ଼ଶୀ ।
ନୃତ୍ୟ ଗୀତରେ ଅତି କୁଶଳତା
ତାଳମାନ ଗ୍ରହ ଲୟରେ ଜୀତା ।
ଗନ୍ଧର୍ବସତ୍ତ୍ୱା ସମସ୍ତେ ହେ ତହିଁ
ଗନ୍ଧର୍ବଙ୍କ ହେଲେ ପାରନ୍ତି ମୋହି ।
ସୁନ୍ଦରୀ ଜଗତତ୍ରୟମୋହିନୀ
ଜଗମୋହନ ଅନୁଗ୍ରହ ଧେନି ।
ନଉଚ ନଖର୍ବା ନପାତଦୃଶା
ନ ସ୍ଥୂଳା ନ କୃଶା ଅପୂର୍ବାଳସା । ୪୦ ।
ଉଚ୍ଚ କୁଚଭରେ ସଦଏ ଭ୍ରମୀ
ନିତମ୍ବବତୀ ଅତି ମନୋହାରୀ ।
ସୁନେତ୍ରା ସୁଭ୍ରୂ ସୁପଦ୍ମମୁଖୀ
ସର୍ବାଙ୍ଗସୁନ୍ଦରୀ ବଙ୍କକଟାକ୍ଷୀ ।
ସୁକେଶୀ ସୁବେଶୀ କେ ମଦାଳସୀ
କେ କନ୍ଦର୍ପକେଳିକଳାଲାଳସୀ ।
ମତ୍ତପିକଭାଷୀ କେ ମନ୍ଦହାସୀ
କେ ସୁଖରାଶି ମନମୋହଫାଶି ।
କାହାକୁ ଦେଖି ନ ଚଳଇ ପାଦ

ଚେ ଚାହିଁଲେ କାମ କରେ ପ୍ରମାଦ ।।
କେ ହସରେ ବଶ କରଇ ମନ
କେ ସୁଖ ଦଅଇ କହି ବଚନ ।
କେ ନୟନ କୋଣେ ଚାହିଁଲା କ୍ଷଣେ
ବିନ୍ଧାଇ ପକାଇ ମଦନ ବାଣେ ।
କାହାର ଭୁରୁଭଙ୍ଗର ଶୋଭୁଛି
ଦମ୍ଭବସନ ନାଶନ କରୁଛି
ଏକେତି ପ୍ରମାଦ ମଦନେ ଭଟା
ମୋହି ପାରନ୍ତି ମହା ଉର୍ଦ୍ଧ୍ୱରେତା ।
ବକ୍ରବାଣୀ କହି ନାସା ଫୁଲାଇ
ହେଲେ ମନକୁ ନଥନ୍ତି ମନାଇ । ୫୦ ।
ମୋହନୀ ନାନା ବିଳାସ ରଙ୍ଗେ
ମୋହନ୍ତି ମନକୁ ବିବିଧ ରଙ୍ଗେ ।
କେ ବେଣୀ ବନ୍ଧ କେ ଝୋଟଣୀ ଜୂଡ଼ା
ଗଭାରେ ଗଭା ପ୍ରଭ ଘରଚୂଡ଼ା ।
କାଳନ୍ଦୀ ଜଳେ ହଂସପନ୍ତି ପ୍ରାୟେ
ମୋତି ସୀମନ୍ତୀ ଅତି ଶୋଭା ପାଏ ।
ଝଲକନ୍ତ ଝିଲିମିଲି ଅଳକା
ଝଟତି ଲଗାଇ କାମ ହେଲକା ।
ଗଣ୍ଡେ ମଣିମୟ କଣ୍ଠେ ଦର୍ପଣ
ନ କରେ କାହା ମନକୁ ଚର୍ପଣ । ୫୫ ।
ଫୁଲ ଭ୍ରମର ଝଲକ ଝଲକା
ଚମ୍ପାକଳି ଅଙ୍ଗୁଷ୍ଠିରେ ମୁଦ୍ରିକା ।

ନାସାରେଣ ମୋତିମଣି ବସଣି
ନେତ୍ର ପଡ଼ିଲେ ମନ ନୁହେ ଆଣି ।
କମ୍ବୁ କଣ୍ଠେ କଣ୍ଠଭୂଷଣ ଶୋଭେ
କରେ କଙ୍କଣ ଚୂଡ଼ି ତାଡ଼ ବାହେ ।
ଚନ୍ଦନ ତିଳକ ଭାଲେ ବିରାଜେ
ବନ୍ଧୂଲି ଅଧରେ ତାମ୍ବୁଳ ସାଜେ ।
ଖଞ୍ଜନଗଞ୍ଜନ ନୟନେ ଅଞ୍ଜନ
ରଞ୍ଜି କି କରେ ନୟନ ରଞ୍ଜନ । ୬୦ ।
ଗୋଡ଼ରୁ ଯାଚୂଡ଼ା ବଳା କାହାର
ଧ୍ୱନିରେ ଜନ୍ମାଏ କୁସୁମଶର ।
ରଣରଣକ ରଣ ରଥ ପ୍ରାୟେ
ଝଲଝ ଦଶଇ ସବୁହୁ ପାୟେ ।
ବିଶେଷେ କେତେ ବା କହିବ ତାହା
ବିବେକ ନ ରହେ ଶୁଣିଲେ ଯାହା ।
ଏକେତ ସେ ଜଗମୋହନ ଘର
ତହିଁ ପୁଣି ଜଗମୋହନ ପୁର ।
ଏଥି ଯେ କରନ୍ତି ଜଗମୋହନ
ଅଉ କଥା ତାଙ୍କୁ କେତେ ଗହନ ।୬୧।
କାହାର ତାର ତାଲ ତାର କଳ ।
କରେ ଉଦିତ ମାନଙ୍କେ ତରଳ ।
କେ ହାବଭାବ ଅନୁଭାବ ରସେ
ଅନେକ ସୁଖ ଅମୃତ ବରଷେ ।
ନାନାରଙ୍ଗେ ଫୁଲ ସୁବର୍ଣ୍ଣଲତା

ଛଳନ୍ତି ପ୍ରାୟେ ହଶନ୍ତି ବନିତା ।
କେ ମୁଗ୍ଧା କେ ମଧ୍ୟା ପ୍ରଗଲ୍ଭା ତହିଁ
କଳାକଳାପୀ ତନୁ ଅଛୁ ବହୁ ।
କାହାକୁ ଚଉର ଦଶ ବରଷ
କାହାକୁ ଷୋଳ କେ ଷୋଳୁ ଜାରସ ।୭୦
କେ ଅବା ସତର ଭିତରେ ତହିଁ
ତାହା ଅବା କେତେ ବର୍ଣ୍ଣିବି କହ ।
ଏମନ୍ତ ରାମା ଯେ ନୃତ୍ୟ କରନ୍ତି
ଜଗତ ନାଥ ମନକୁ ହରନ୍ତି ।
ଏକେତ ତାଙ୍କର ମଞ୍ଜିଷ୍ଠା ରାଗ
ଚିରକାଳ ରହେ ହୁଅଇ ବେଗ ।
କୁସୁମ ରାଗ କେହୁ କେହି ବୋଲେ
ରହେ ସମସ୍ତ ରାଗ ବସ୍ଥିଲେ ।
ରଙ୍ଗରେ ନାନାରଙ୍ଗ କରନ୍ତି
ଅନଙ୍ଗେ ଅନଙ୍ଗ ରସ ପୂରାନ୍ତି । ୭୫ ।
ନୃତ୍ୟ ବଢ଼ାଇ ସମସ୍ତେ ହେ ଚଳେ
ହସ ରସରେ ନାନା କୁତୂହଳେ ।
ରଣରଣକ ରଣ ଧରପନ୍ତି
ପ୍ରାୟେ ରଣଭୂମି ହୁହେ ମିଳନ୍ତି ।
ଏମନ୍ତେ ବଢ଼ଇ ବଡ଼ ଟିଂକାର
ଲୋକେ ଭିତରୁ ହୁଅନ୍ତି ବାହାର ।
ଖଣ୍ଡେ ଖଣ୍ଡେ ଦୂରେ ଯାଇଁ ରହନ୍ତି
ମହା ସୁପକାରେ ଭୋଗ ବହନ୍ତି ।

ମଣୋହି କରନ୍ତି ଦେବାଧି ସ୍ୱବ
ବଲ୍ଲଭ ଲାଗି ସେହିଲାଗେଁ ହୁଏ ।୮୦।
ଅହା ସେ ବନ୍ଦାପନା ବିଧାନ
ସମସ୍ତ ଲୋକର ଗତି ନିଧାନ ।
ଅଚମନ ଶେଷେ ବିଡିଆ ଲାଗି
ହୁଅନ୍ତି ପ୍ରଭୁ ମହାସୁଖଭୋଗୀ ।
ଏହି ସମୟରେ ପୁରାଣ ଶୁଣି
ଦେବତାମାନଙ୍କୁ ହୁଏ ମେଲାଣି ।
ନିଦ୍ରାରେ ଅତି ଅବେଶ ହୋଇ
ପହୁଡନ୍ତି ଦିବ୍ୟ ପଲଙ୍କେ ଯାଇଁ ।
ପାଳି ସେବକ ରହନ୍ତି ସେବାରେ
ଦଣ୍ଡିଆସି ଲୋକ ଫି ଦରଜାରେ ।୮୫।
ଏଥିଅନ୍ତରେ ପଡ଼ଇ କବାଟ
ଏମନ୍ତେ ଜଗନ୍ନାଥ ଦେବରାଠେ ।
ନୀତି ହି ନୀତି ପ୍ରତି ପାଳନ୍ତି
ମାଳିକ ବୃତ୍ତିରେ ରାଜ୍ୟ ଚାଳନ୍ତି ।
ରଜନୀ ଶେଷେ ପୁଣି ସେହିମତି
ଏମନ୍ତ ହୋଇ ଦେବରାଜ ନୀତି ।
ଏହା ଯେଉଁମାନେ ଭାବନ୍ତି ନିତି
ତାଙ୍କର କାହିଁ ଧର୍ମରାଜ ଭୀତି ।
ଶୁଣ ହେ ସାଧୁ ବିବେକ ବର
ଏ ପ୍ରଭୁଙ୍କୁ ଭଜ ସଂସାରୁ ତର ।୯୦।
ବୋଲିବ ଅବା ଦୀନକୃଷ୍ଣ ବାଣୀ

ତାହା କେମନ୍ତେ ଯିବୁ ଅମ୍ଭେ ଶୁଣି ।
ଗୁଣ ମଧ୍ୟେ ଦୋଷ ଥିଲେ ନର୍ଦ୍ଦୋଷ
କଳଙ୍କ ଥିଲେ ଚନ୍ଦ୍ରମା ପୀୟୂଷ ।
ସହଜେ ଦେଖ ଚନ୍ଦନ ପିତା
ବାସନା ଭାବ ଘେନ ନ ଘେନ ତା ।
ଅତହିଁ ଘାତ କଲେହେଁ ସେ ଫଣୀ
ଗ୍ରହଣ ନକ ନ କର ତା ମଣି ।
କୋକିଳ କଳା ହେଲେ ତାହା ବାଣୀ ।
ମଧୁର ଭାବରୁ ଅବଶ୍ୟ ଶୁଣି । ୯୬ ।
ଶାମ୍ବୁକୁ ଜାତ ହୋଇଲେ ମୁକୁତା
ମଣ୍ଡନ ନ କରେ କେଉଁ ଲୋକ ତା ।
ଏ ଘେନ ଏ ଜଗମୋହନ ଗୀତ
ଅଗଢ ଗଢ ଲୋକଙ୍କର ହିତ ।
ଶ୍ରବଣେ ଶୁଣି ମନେ ଏହା ଭାବ
ଅନ୍ତେ ପାଇବ ବଇକୁଣ୍ଠେ ଠାବ ।
ତୁମ୍ଭେ ତ ସବୁହି ପ୍ରକାରେ ଧୀର
ଅସାର କଥା ତୁମ୍ଭେ କର ସାର ।
ମେଘ ଯେମନ୍ତ ଲବଣ ଅମୃତ
ଗ୍ରହଣେ କରଇ ଅମୃତ ମତ ।୧୦୦।
ସେହିରୂପେ ସାଧୁ ଲୋକ ଚରିତ
ତାହାଙ୍କୁ ମୋର କୋଟି ଦଣ୍ଡବତ ।
ଏବେହେଁ କହୁଅଛି ମୁଁ ଖଳଙ୍କୁ
ନ ଯିବ କେବେହେଁ ନନା ଗୋଳକୁ ।

ତୁମ୍ଭ ବଚନ ନଉକା ସମ୍ପ୍ତେ
ହେଳାରେ ଲୋକ ପ୍ରତିକୂଳ ଯାଏ ।
ପୁଣି ଅପୂର୍ବ ଶରକୁ ଭଜଇ
ଗୁଣବନ୍ତ ନୋହୁ ମର୍ମେ ବାଜଇ ।
ଜୀବନେ ଥିଲେ ନ ଶୁଖଇ ବ୍ରଣ
ଦୁଃଖ ଦେବାରେ ସେ ଅଟି ନିପୁଣ ।।
ଦୀନକୃଷ୍ଣ ବୋଲେ ଏ ଶର ତେଜ
ସାଧୁବୃତ୍ତି ହୋଇ ସାଧୁଙ୍କୁ ଭଜ ।
ଜଗନ୍ନାଥ ଦେବରାଜଙ୍କ କଥା
ଶ୍ରବଣେ ଶୁଣି ଖଣ୍ଡ ଭବ ବ୍ୟଥା ।
ଏ ଶରୀର ଇନ୍ଦ୍ରଜାଲ ସମାନ
ଦଣ୍ଡକେ ହୋଇଯିବ ଆନ ଆନ ।
ଚମକାର ଚମପଟ୍ଟ ପରାଏ
ହୋଇଅଛୁ ଏ ଘଣଭଙ୍ଗ ଦେହେ ।
ପାଣି ଫୋଟକା ପ୍ରାଏ ଫାଟିଯିବ
ଭସ୍ମ କୃମି ବିଷ୍ଠା ଉନର୍ଥେ ହେବ ।୧୧୦।
ଅନେକ ରୂପେ ଏହା ଯେ ବିପତ୍ତି
ଏଥିକି ଏକା ଜଗନ୍ନାଥ ଗତି ।
ଦେଖ ଦୁସ୍ତର ସଂସାର ସାଗର
ଏହା ତରିବାକୁ ଉପାୟ କର ।
ନାମ ବୋଇତ କର ବେଗେ ସଜ
କର୍ଣ୍ଣଧାର ହେବେ ଦେବାଧିରାଜ ।
ଭକତି ଭାବ ଯେ ପ୍ରକାଶ ତହିଁ

ସୁଖେ ତରିବ ଢୁଣ୍ଡ ଭୟ ନାହିଁ ।
ଦୀନକୃଷ୍ଣ ବୋଲେ ନ କର ହେଳା
ଭାବୁଥାଅ ଶେଢ ପଙ୍କଜ ଭୋଲା ।
ସବୁଠାରେ ସମହୃଦୟ ହୁଅ
ସନ୍ତୋଷେ ଦୀନଜନେ ଦାନ ଦିଅ ।
କୋମଳ ପ୍ରିୟ ବଚନକୁ କହ
ଜୀବରେ ମାତ୍ର ଦୟା ଥିବ ବହୁ ।

---

# ଚତୁର୍ଥ ଛାନ୍ଦ

ରାଗ—କୌଶିକ

ଏବେ ଶୁଣ ସାଧୁ ଜନେ ଜଗନ୍ନାଥ- ଦେବନୃପତିଙ୍କ ଚରିତ
ଅଶେଷ କୋଟି ବ୍ରହ୍ମାଣ୍ଡରେ ଯାହାର ଯଶ ଅନେକ ରୂପେ ଖ୍ୟାତ
ବ୍ରହ୍ମ ଲୋକରେ
ବ୍ରହ୍ମ ଭୁବନ ନିକେତନ
ଉପରେ ହୋଇଛୁ ବିତାନ କମଳ ବ୍ରହ୍ମଜାତ ଶ୍ରୀ କେତନ । ୧ ।

ଇନ୍ଦ୍ର ଅମରାବତୀରେ ଅପସରୀମାନଙ୍କ ହୃଦ ତାର ହାର
ଅଳକାପତି ଅଳକାପୁର ଦ୍ୱାରେ ମୁକୁତା ତୋରଣ ପ୍ରକାର
କ୍ଷୀର ସମୁଦ୍ରେ
ଫେନ ରୂପରେ ପରକାଶ
ବନ କାନନେ ପ୍ରଫୁଲ୍ଲିତ ସୁମନ ସୁନାସୀର ମୁଖେ ହାସ । ୨ ।

ଏମନ୍ତ କରି କେତେହେଁ ମୁଁ କହିବ ଯଶ କଦମ୍ବ ପରକାଶ
କହିଲେ ଯାହା ସହସ୍ରମୁଖେ ଶେଷ ଶେଷହିଁ ନ କରିବେ ଲେଶ
ଭବ ବିରଞ୍ଚି
ଇନ୍ଦ୍ର ଚନ୍ଦ୍ର ବିବରଣ
ଯାହା କରୁଣା—କଟାକ୍ଷ ମହିମାରୁ ଏମାନଙ୍କର ବଡ଼ପଣ । ୩ ।

ନାଗ ନର ସୁର ଲୋକ ମଧ୍ୟେ କେହି ସମାନ ନାହାନ୍ତି ତାହାଙ୍କୁ
ରୂପ ଗୁଣ ପରାକ୍ରମେ ନିରୂପମ କରଣ ଲକ୍ଷିବା କାହାକୁ
ସେଉଁ ପ୍ରଭୁଙ୍କ
ଚରଣ ରୂପ ଗୁଣ କୀର୍ତ୍ତି
କହି ବସିଲେ ଗଣେଶ ଆଦି ସରସ୍ୱତୀ ହିଁ ରହିବେ ନିବର୍ତ୍ତି । ୪ ।

କର ତା ବଚନେ କେତେ କହିବ ତା କହିଲେ ନାହି ସେ ସରିବ
କେବଳ କୃତାର୍ଥ ହୋଇବା ନିମନ୍ତେ ମନରେ ଭାବନା କରିବ
କାମଦେବ ସେ
ଯେଣୁ କର ମୀନ-କେତନ
କମଳା କୋମଳ କର କମଳରେ କରନ୍ତି ସନ୍ତତେ ଯତନ । ୫ ।

ଅର୍ଦ୍ଧଚନ୍ଦ୍ରଧର ଭାବର ଶଙ୍କର ସରିଏ ମହାବୁଦ୍ଧିଦାତା
ମହାବୂକ ଗଣମାନଙ୍କ ଶରଣ ମହାକଳାରେ ସୁଶୋଭିତା
ଦିବ୍ୟ ଅଙ୍କୁଶ
ଥିବାରୁ ସହଜେ ଗଣେଶ
ବଜ୍ର ଧରିବାରୁ ବେଭରେ ବାସବ ବନେ ସମସ୍ତ ସୁମନସ । ୬ ।

ଚକ୍ର ଚିହ୍ନମାନରୁ ଚକ୍ରବର୍ତ୍ତୀ ସେବା କଲେ ସୁଖ ଦିଅନ୍ତି
ଶଙ୍ଖ ପଦ୍ମ ଶୋଭିବାରୁ ଯେ ଶଙ୍ଖ ପଦ୍ମନିଧି ପ୍ରାଏ ଦିଶନ୍ତି
ଧ୍ୱଜ କଳସ
ଅମ୍ବରେ ଯେଉଁ ଶୋଭିବନ
ଏହା ସେବନ ମନେ ମଣି ହେ ସୁଜନେ ମହାରଥ ଯାନ ଶୋଭନ ॥

ଧନୁ ଧରିବାରୁ ମହାକ୍ଷତ୍ରିୟ ସେ ଅଭୟ କରେ ତପୀଜନ
ଗୋଷ୍ପଦ ବାଦରୁ ପରଚେ ହୁଅଇ ସୁରଭିମାନଙ୍କର ସ୍ଥାନ
ଊର୍ଦ୍ଧ୍ୱ ରେଖାରୁ
ରେଖା ସେ ମହାପୁରୁଷରେ
ଯବ ତ୍ରିକୋଣ ସ୍ୱସ୍ତିକ ଅଷ୍ଟକୋଣ ବିନ୍ଦୁ ବିରାଜେ ଏ ବାହାରେ ॥

ମୁନି ମାନମ ମାନସ ମାନସରେ ବିକାଶମାନ କରନ୍ତିରେ
କେ କହିବ ସେ ପାଦପଦ୍ମ ମହିମା ମାନବ ହୋଇଣ ତରେ

ସବୁ ପ୍ରକାରେ
ସବୁର ସେ ସୁଖଦାୟକ
ଯାହା ଅଂଶେ କରି ତୈଲୋକ୍ୟରଚନା କରନ୍ତି ଲୋକନାୟକ ।୯।
ଯେଉଁ ପାଦପଦ୍ମ ସେବାରୁ କମଳା ଅଷ୍ଟ ଅଇଶ୍ୱର୍ଯ୍ୟ କାରଣୀ
ଭକ୍ତଜନ ଭବସିନ୍ଧୁ ତରିବାକୁ ଯେଉଁ ପାଦପଦ୍ମ ତରଣୀ
ଯେଉଁ ଚରଣ
ଅଶରଣ ଲୋକ ଶରଣ
ଯାହା ଚିନ୍ତିବାରୁ କୁମ୍ଭୀର ମୁଖରୁ ମୋକ୍ଷ ହେଲା ବର ବାରଣ ।୧୦
ଯେଉଁ ପାଦପଦ୍ମ-ପ୍ରସାଦରେ ପୂର୍ବେ ପାଷାଣ ହୋଇଲା ଅବଳା
ଯେଉଁ ପାଦପଦ୍ମ-ମହିମାରୁ ଧ୍ରୁବ ଧ୍ରୁବଲୋକରେ କଲେ ଲୀଳା
ଯେଉଁ ପୟର
ପରଶେ ବଳୀ ନରପତି
ଭୂଇଁ ପ୍ରାୟେ ମଣି ପତି କରିଦେଲେ ମହାସୁଖ ରାଜ-ସମ୍ପତ୍ତି । ୧୧ ।
ଯେଉଁ ପାଦପଦ୍ମ ଚିନ୍ତାକରି ହୃଦେ ପ୍ରହଲ୍ଲାଦ କଷ୍ଟୁ ତରିଲେ
ପାରିଜାତକ ପୁଷ୍ପରେ ମଣ୍ଡିହୋଇ ଅମର ପୁରେ ବିହରିଲେ
ଯେଉଁ ପାଦକୁ
ପୂଜାକରି ଧର୍ମ ନନ୍ଦନ
ଧାର୍ମିକ ବିବେକ ପଣରୁ ହୋଇଲେ ଅନେକ ନୃପତି ବନ୍ଦନ । ୧୨ ।
ଏମନ୍ତ ପ୍ରଭୁଙ୍କୁ କି ଉପମା ଦେବି ଯାହା ପାଦରି ଏ ମହିମା
ଯେଉଁ ଅଙ୍ଗକୁ ଦେଉଁ ଲକ୍ଷ କରିବ ସେ ମହାସୁଖ ଶୋଭା ସୀମା
ମହାପ୍ରଭୁ ସେ
ଜଗତ ଜନଙ୍କ ହିତରେ
କରନ୍ତି ବିବିଧ ଯାତ୍ରା ବିତରେ ହେମମନ୍ଦିର ଷଡ଼ରିତୁରେ । ୧୩ ।

ବସ୍ତ୍ର ଓଢ଼ଣି ମକର ଅଭିଷେକ ଦୋଲ ଦମନକ ଚନ୍ଦନ
ସ୍ନାନ-ଗୁଣ୍ଡିଚ୍ଚ ଶୟନ ଅୟନ ପାର୍ଶ୍ୱ ପରିବର୍ତ୍ତେ ସ୍ଥାପନ
କ୍ରମେ କହିବ
ଯେଉଁ ଋତୁରେ ଯେଉଁ ଯାତ
କେବଳ କୃତାର୍ଥ ହୋଇବା ନିମିତ୍ତ ଶୁଣିମ ସ୍ଥିର କରି ଚିତ୍ତ । ୧୪ ।

ମୋହୋ ବୁଦ୍ଧିରେ ମୁଁ କହି ନ ପାରିବ କୁହାଇବେ ସେ ମହାବାହୁ.
ମହିମାସାଗର ମହିମାରେ ପଙ୍ଗୁ ପର୍ବତ ଲଙ୍ଘେ ଶୁନ୍ତିଁ ଶୁନ୍ତିଁ
ବଡ଼ ଲୋକଙ୍କୁ
ଦିବ୍ୟ ବଚନ ସେ କୁହାନ୍ତି
ଅନ୍ଧକୁ ଲୋଚନ ଦାନ ଦେଇକରି କାଲେ କାଲେ କଥା ଶୁହାନ୍ତି ।

ଭକ୍ତଭାବେ ଭୋଳା ଶ୍ୱେତ ପଦ୍ମତୋଳା ବଣିକୂଠ ଦିଠ ନାଗର
ପୂର୍ବେ ପାଷାଣରେ କପିଙ୍କ ହାତରେ ବନ୍ଧାଇଲେ ହେଲେ ସାଗର
କଲେ କୀଠକୁ
ବଜ୍ର ଅଙ୍ଗହି ସେ କରନ୍ତି
ମାଇଲେ ମହାପ୍ରତାପୀ ବଳବନ୍ତ ସୁର ଅସୁରଙ୍କୁ ମାରନ୍ତି । ୧୭ ।

ଏହି ଧେନ ବଡ଼ ଭରସା ମୋହୋର ନୀଳ-ପର୍ବତସିଂହଠାରେ
ଅଛି ଭୟଙ୍କର ସଂସାର ଜନଙ୍କୁ ଭୟ ନ ଥାଇ ମୋ ମନରେ
ଅଜ୍ଞାନ ଲମ୍ଭ
ବିପୁଳ ଅଛେ ବେନ ବାହା
ଉର୍ଦ୍ଧ୍ୱକରି ଗୁହାଁ ଗୁହାଁ ହେଉଥିଲେ ହୃଦୟ ହୋଉଥାଇ ଯାହା ॥

ବଚନରେ ତାହା କେତେହେଁ କହିବ ଅହା ସେ ଶ୍ରୀମୁଖ ଗୁଭୁଗ
କୋଟି କୋଟି ଚନ୍ଦ୍ରଉଦୟା ଉଗ୍ରତା ଦେଉ ଯେ ଥାଇ ଦୂର କରି

ଚନ୍ଦ୍ର ତିଳକ
ଅବୋଧ ଚନ୍ଦ୍ର ଖଣ୍ଡରେଖା
ଇନ୍ଦ୍ର ଧନୁର ମଣୀର ଯେ ଦେଖାଇ ଦିଅଇ ମହା ଦିବ୍ୟଶିକ୍ଷା । ୧୮ ।

ମକର ମୁଖ ମଣିମୟ କୁଣ୍ଡଳ ଗଣ୍ଡମଣ୍ଡଳେ ଯେ ଝଟକେ
ଦର୍ଶନସୁଖ କଦମ୍ବରେ କଦମ୍ବଫୁଲ ପ୍ରାୟେ ଅଙ୍ଗ ପୁଲକେ
ଚକା ନୟନେ
ବିସ୍ତାରି ସସ୍ନେହେ ଚାହିଁବା
ଅହା ସେ ବିପୁଳ ହୃଦେ ଫୁଲମାଳ ପନ୍ତି ପନ୍ତି ଦୋଳି ରହିବା । ୧୯ ।

ମୁହିଁ ଏହି ଭାବନା କରୁଥାଇ ସିନା ରାତି ଦିବସ ନିରନ୍ତରେ
ଅନ୍ୟକ ଅହନ୍ତା କରିବାକୁ ଚିନ୍ତା ନ ଥାଇ ମୋ ଅନ୍ତର୍ଗତରେ
ଅହେ ସୁଜନେ
ଏହି ପ୍ରଭୁଙ୍କ ସେବା କର
ପତଙ୍ଗ ପ୍ରାୟେ ସୁରଙ୍ଗ ଦେଖି ମାୟା ଅନଳରେ ପଡ଼ି ନ ମର । ୨୦ ।

ଝଲ ବଲ ମୂର୍ଖ ଲୋକଙ୍କୁ ଏ ସୁଖ-ଦାୟକ ନୁହଇ କେବେହେଁ
ଚନ୍ଦ୍ର ଉଦେ ହେଲେ ଅକର୍ମଶୀଳା ଯେ ଲେଖେ ହେଁ ଦୁଃଖଭୂତ ନୋହିହି
ବୋଧ ନୁହନ୍ତି
କି ହେବ ତାହାଙ୍କୁ କହିଲେ
ମାତ୍ର ମାର୍ଜାର ସର୍ପ ଫେଣ ନ ଧରେ ଯେତେ ପଦ୍ମ ତୋଳା ଗାଇଲେ । ୨୧

ଏକା ଜଗନ୍ନାଥ ବାହାରେ କୃତାର୍ଥ କରିବାକୁ ନାହିଁ ପସାରେ
ଏହୁ ଯେଣ ଧାନ କୃଷ୍ଣ ତାଙ୍କୁ ମନ ବଚନ କର୍ତ୍ତବ୍ୟରେ ଧରେ
ମହାପ୍ରଭୁ ହେ
ଏହି କରୁଣା ମୋତେ କର
ଜଗମୋହନ ଗୀତ ନିରନ୍ତର ମୋ କଣ୍ଠରେ ହେଉଥାଉ ହାର ॥

---

# ପଞ୍ଚମ ଛାନ୍ଦ

( କେଦାର ଛକେ ଗୀତେ । )

ଆହେ ସାଧୁଜନମାନେ  ଏବେ ଶୁଣ ଏକମନେ
ଓଡ଼ିଶା ମକର-ଅଭିଷେକ ଯାତ୍ରା ହୁଅଇ ଯେଉଁ ବିଧାନେ । ୧ ।

ହେମ ଶିଶିର ସମୟେ  ଏଉଛବ ଉତ୍ସବ ହୁଏ
କି କହିବ ମହାମହିମା ଯାହା ସେ କଲେ ପ୍ରଥମ ଉଦୟେ ॥

ଅତି ସୁନ୍ଦର ସୁବାସ  ମହା ଲକ୍ଷ୍ମୀଙ୍କ ନିବାସ
ବ୍ରହ୍ମାଣ୍ଡ କର୍ତ୍ତା ବ୍ରହ୍ମାଙ୍କ ଆସନ ପଦ୍ମ କରଇ ବିକାଶ । ୩ ।

ଧର୍ମ୍ମ କର୍ମ୍ମ ଅବକାଶ  ବିଷୟ ବିଳାସ ବାସ
ଏମନ୍ତ ଦିବସକୁ ଲକ୍ଷ୍ୟ କରଇ ଥାଉଁ ଥାଉଁ ପ୍ରଭୁ ପାଶ । ୪ ।

ଚକ୍ରବାକ ସୁଖଦାତା  ଜନ ଆନନ୍ଦ କରତା
ମହାପ୍ରତାପୀ ସୂର୍ଯ୍ୟ ତେଜ ଖଣ୍ଡିଲ ଏମନ୍ତହିଁ ସେ ଯୋଗ୍ୟତା । ୫ ।

ଥାଉ ଆଉ କଥା ଦୂରେ  ଅଗ୍ନି ଯେଉଁ ଶୀତ ଡରେ
ପଳାଇ ଯାଇଁ ପଶିଲେ ପୁରେ ପୁରେ ନରମାନଙ୍କ ଉଦରେ । ୬ ।

ଏ ଯେଣୁ ଅନେକ ଭକ୍ଷେ  ଦେଖିଲେ ତାଙ୍କୁ ପ୍ରତ୍ୟକ୍ଷେ
ସେବା କଲେ ଅତି ସନମାନ କରି ମହତ ଅତିଥି ଲକ୍ଷେ । ୭ ।

ପ୍ରବଳ ଶୀତ ଏକାଏ  କଲା ସମସ୍ତଙ୍କୁ ଜୟେ
ଉତ୍ତମ ଲୋକଙ୍କୁ ନତ କରାଇଲା ଗୁଣ ଦେଲା ଧନୁ ପ୍ରାୟେ । ୮ ।

ଶୀତ ଭୟେ ଥରହର  କମ୍ପିଲେ ଅନେକ ନର
ଦେହ ଢାଙ୍କୋଉଇ କଙ୍କର ପରାୟେ ଯୋଡ଼ିଲେ କେ ବେନି କର ।

ଶୀତ ନାଶିବା ଉପାୟେ କଲେ ଲୋକ ଠାଏ ଠାଏ
ଭୂଳ କଉପ ନାନା ବସ୍ତ୍ରମାନକେ ପରିଧାଣ କଲେ କାୟେ । ୧୦ ।

ଦଧି ଦୁଧ ଘୃତମାନ କଲେ ଅନେକ ଭୋଜନ
ବଳବନ୍ତ ହେବା ଶୀତକୁ ନାଶିବା ମନେ ବିଚାରି ଏମାନ । ୧୧ ।

ମଞ୍ଜିଷ୍ଠାରଙ୍ଗ ବସନ କଲେ କେହୁ ପରିଧାନ
ଶୀତ ପବନ ବାଣ ନିବାରଣେ ସେ ଅଙ୍ଗ ରକ୍ଷ ସୈନ୍ୟମାନ । ୧୨ ।

ସବୁଅଡ଼େ ଶୀତ ଗୋଳ ଲୋଡ଼େ କେ ଅଶୀତ ସ୍ଥଳ
ସନ୍ଧ୍ୟା ହେଲା ବେଳୁ ସଦନେ ପଶି କେ ଚଲେ ଗୋବିନ୍ଦ ଗୋପାଳ ॥

ଶୀତ ଅସେ ଏହି ଦିଗେ ଏମନ୍ତ ବୋଲି କେ ବେଗେ
ବାତାୟନମାନ ନିରୋଧ କରନ୍ତି ବିଭାବରୀ ସୁଖ ଲାଗେ । ୧୪ ।

ଶୀତକର ବୋଲି ଡରେ ଚନ୍ଦ୍ର ଚନ୍ଦନ ଚନ୍ଦ୍ରରେ
ଆଦର ନ କଲେ ବଡ଼ ଲୋକମାନେ ଭୂଷନ୍ତି ବସାଇ ପୁରେ । ୧୫

ଅରକ୍ଷିତ ଜନମାନେ ଆଶା ନିବେଶି ତପନେ
ଅଗ୍ନି ଦେବତାଙ୍କୁ ଆଶ୍ରେ କରି ନିଶି ଦିବସ ବଞ୍ଚନ୍ତି ଧାନେ । ୧୬ ।

କେ ବୋଲଇ କାଳ ଜାଡ଼ ଭାଙ୍ଗି ପକାଇଲା ହାଡ଼
କେଉଁ ଦିନ ମହାପ୍ରଭୁ ଏ କରିବେ ଘୋର କଷ୍ଟୁ ଜୀବ ଛାଡ଼ ।୧୭।

ଶୀତ ଅଛି ବୋଲି ଜଳେ କେହି ନ ପଶେ ନିକଳେ
ଜଗନ୍ନାଥ ବୋଲି କେ ପଶେ ଯେସନ୍ତ କେ ତପତ କରେ ଅନଳେ ॥

କେ ଅବା ଶୀତ ଆକୁଳେ ପଶିଲେ ଯୁବତୀ କୋଳେ
ଅତି ସୁଖରେ ମୁଖେ ଦେଇ ତାମ୍ବୂଳ ପୂରିତ-ମୁଖମଣ୍ଡଳେ । ୧୯ ।

ଯାହାର ନାହିଁ ଯୁବତୀ ପଡ଼ିଲା ତାଙ୍କୁ ବିପତ୍ତି
କୋଟିଏ ଯମ ସମ କରି ଗଣିଲା ମହାଘୋର ଶୀତ ଋତୁ । ୧୦ ।

ଥିଲେ ସ୍ୱଜନ ଯା' କତି ନ ଗଣ ତା ଶୀତ ଖ୍ୟାତି
କମ୍ପି ରୋମାଞ୍ଚ ସ୍ୱରଭଙ୍ଗ ବଢିଲା ଶୀର୍ଣ୍ଣ ହୋଇଲା ମୂରତି । ୧୧ ।

ଉତ୍ତମ ଯେଉଁ ଯୁବତୀ ରତିପତି ମଦେ ମାତି
କାନ୍ତ ମନ ଜାଣି ରସିକ ସେହାଣୀ କଲା ବିପରୀତ ରତି । ୧୨ ।

ଶୀତ ଚରିତ କହିଲେ ସରିବ ନାହିଁ ଏ ଭଲେ
ଯେଉଁ ଶୀତ ଲାଗି ମିତ୍ର ଚନ୍ଦ୍ରଗ୍ରାନ୍ ଦିଗ ଲାଗି ବେଗେ ହେଲେ ।୧୩।

ଏମନ୍ତ ହିମ ସମୟେ ଜଗନ୍ନାଥ ଦେବରାୟେ
ଦିବ୍ୟ ଯୋଡ଼ାମାନ ନିଯୋଗ କରି ସେ ଶ୍ରୀଅଙ୍ଗରେ ଲାଗି ହୁଏ ॥

ଘୃ କର୍ପୂର ଗନ୍ଧାଦିରୁ ଶ୍ରୀଅଙ୍ଗେ ଫେଣ୍ଟା ଗରୁଁଛୁ
ଶୀତ ପୀତ ନୀଳ ଲୋହିତ ବସନ ଶ୍ରୀମୁଖଙ୍କୁ ଥାଇ ଗଛୁ । ୧୫ ।

ଅନେକ ମରୁଅ କୁନ୍ଦ କୁସୁମରେ ମାଳ ବୃନ୍ଦ
ମଣ୍ଡିହୋଇ ମହାପ୍ରଭୁଙ୍କୁ ଦିଅନ୍ତି ପରମାନନ୍ଦ ଗୋବିନ୍ଦ । ୧୬ ।

ଦିନେ ଦିନେ ଦିବ୍ୟବେଶ ହୁଅନ୍ତି ଯେ ପୀତବାସ
ଦାସର ଦାସ-ଦାସ ହୋଇ ଥିବାକୁ ଦେବତାମାନଙ୍କ ଆଶ । ୧୭ ।

ମକରାକୃତି କୁଣ୍ଡଳ ମଣ୍ଡିଥିଲେ ଗଣ୍ଡସ୍ଥଳ
ମୁଖମଣ୍ଡଳ କି ଶୋଭା ଦିଶୁଥାଇ ନେତ୍ରକୁ ଦେଇ ସୁଫଳ । ୧୮ ।

ଏମନ୍ତେ କେତେ ଦିବସ ଶେଷେ ଶିଶିର ପ୍ରବେଶ
ବିବିଧ ମେଘ ମହା ପ୍ରବଳରେ ଘୋଟନ୍ତି ଦିଶ ଆକାଶ । ୧୯ ।

ଶୀତଳଜଳର ସେ ଜଳ          ବେଢ଼ଇ ସୂର୍ଯ୍ୟ-ମଣ୍ଡଳ
ସନକର କର କୁଡ଼ବାଲେ ତାଙ୍କୁ ଦଣ୍ଡକେ କରେ ନିର୍ମଳ । ୩୦ ।

ଥଇ ଥାଇ କାଢ଼ି ପଡ଼େ          ସୂର୍ଯ୍ୟଦେବ ତାଙ୍କୁ ଲୋଡ଼େ
ଜଗାଇ ଲାଗି ହୋଇ ଜଗମୋହନ ରାଉତ ବେଶ ନ ଛାଡ଼େ ।୩୧।

ଯିବେ ଶିରଧାଣ ଶୋହେ          ସ୍ୱଜନର ମନ ମୋହେ
ସକଳ ବ୍ରହ୍ମାଣ୍ଡନାଥ କମ୍ପାଇଥିବେଣି ଶ୍ରୀକାରଗେ ବନ୍ଦେ । ୩୨ ।

ତହୁଁ କଷ୍ଟୁଦନ ଶେଷ          ପୂର୍ଣ୍ଣିମା ଆସି ପ୍ରବେଶ
ଅଭିଷେକ ପାଇଁ ସୁବର୍ଣ୍ଣ କଳସେ ଜଳ ହୋଏ ଅଧିବାସ । ୩୩ ।

କମ୍ବୁକଣ୍ଠେ ନାୟକ          ଅଶେଷ ସୁଖ ଦାୟକ
ଚନ୍ଦନ ଜଳେ ଅଭିଷେକ ବଢ଼ଇ ଘୋଷନ୍ତି ସମସ୍ତ ଲୋକ । ୩୪ ।

ଦଣ୍ଡାନ୍ଧ ସୁଖରାଶି          ଦିବ୍ୟ ବେଶ ହୋଇ ବସି
ଏକେ ମନ୍ଦାଶୋଭା ସେ ପ୍ରାଣ ବଲ୍ଲଭ କମଳା ପାଟମହିଷୀ । ୩୫ ।

ଚତୁର୍ବିଧ ବାଦ୍ୟ ବାଜେ          ପାଶେ ଦଣ୍ଡଛତ୍ର ରାଜେ
କାଣ୍ଡୀର ତଣ୍ଡୁଳ ଦୂର୍ବାଦଳ ଦେଇ ବନ୍ଦାପନା କଲେ ଦ୍ୱିଜେ ।୩୬।

ସେ ଦରଶନ ଯାହାର          ହୋଇଲା ଧନ୍ୟ ତାହାର
ଆଉବେଳେ ସେ ଜନମଠାରୁ ଘୋର କଷ୍ଟ ନାହିଁ ଆହାର ।୩୭।

ନବାଙ୍କ ଯାତ୍ରା ଅଣି          ଏହି ସମୟରେ ଜାଣ
ନବାନ୍ନ ଲାଗି କି ସବୁ ନବଧନ ହୁଅଇ ବିଧି-ପ୍ରମାଣ । ୩୮ ।

ଦେଖି ବଣ ହୁଏ ନେତ୍ର          ସୁନ୍ଦର ଧବଳ ଛତ୍ର
କଲାକନାଷ୍ଟି ଉଜ୍ଜ୍ୱଳ ମାଳ ମାଳ ଜଗନ୍ନାଥ ଭୋଗପାତ୍ର । ୩୯ ।

ଅନେକ ଭୋଗସମ୍ଭାର          କହିଲେ ହେବ ଅପାର
ସ୍ୱଭାବେ ପ୍ରବେଶ ହୋଇଛୁ ମନ୍ଦିର ଚତୁର୍ଦ୍ଦିଶେ ନାମ ଘୋର । ୪୦ ।

ସୁଧାଲେପ ସବୁଠାରେ          ବନ୍ଦନ ତୋରଣ ଦ୍ୱାରେ
କରୁଣା-କର ଉତ୍ସବରେ ଫରୁଣା ନୋହଇ କେତେ ପ୍ରକାରେ ॥

ନାନାବର୍ଣ୍ଣେ ଫୁଲମାଳ          ବଡ଼ ବଡ଼ ଉଚ୍ଚ ଚୂଳ
କେତେ ରୂପେ କେତେ କୋଠାରୁ ଅସର ତୋଷଇ ନେତ୍ର ଭ୍ରମର

ଧୂପ ସାର ଜଗଦୀଶ          ହୁଅନ୍ତି ମହା ପ୍ରବେଶ
ସେହି ପ୍ରଭୁଙ୍କୁ ସେ ମାଳ ଚୂଳ ଶୋହେ ଜୟ ନୀଳାଦ୍ରିନିବାସ ।୪୩।

ମଣୋହି ବଢ଼ାଇ ଦ୍ୱାର          ବନ୍ଦାପନା ଲାଗି ସାର
ସ୍ତବ ନବ ମୁନି ବୃନ୍ଦ ଘେନି ସିଂହାସନ ପରିକ୍ରମା କରି । ୪୪ ।

ବାଜଇ ଗୀତ ଝମକ,          ଶଙ୍ଖ ମହୁରୀ ଅନେକ
ଘଣ୍ଟା ମର୍ଦ୍ଦଳ ବେଣୁ ବୀଣା କାହାଳି ଶୁଭେ ଜୟ ଜୟ ଡାକ । ୪୫ ।

ଷୋଡଶୋପଚାର ଧରାଇ          ଚତୁର୍ବର୍ଗ ଜୀବ ଦେଇ
ହଳେ ହଳେ ମଣିମୟ ବିମାନରେ ଲୋକଙ୍କ ବାଞ୍ଛା ପୂରାଇ । ୪୬ ।

ଅଥା ସ୍ୱର୍ଗେ ରହି ସୁରେ          ଦର୍ଶନ କରନ୍ତି ଧୀରେ
ଜୟ ଜୟ ସ୍ତୁତି କରି ସୁର ପୁଷ୍ପ ବରଷନ୍ତି ମସ୍ତକରେ । ୪୭ ।

ଅପସରା ବୃନ୍ଦ ମିଳି          ଝୁଲି ଅଙ୍ଗକୁ ଯାମଳ
ଗୀତ ଗାଇ ନୃତ୍ୟ କରନ୍ତି ଛନ୍ଦନ୍ତି ଦେଖାଇ ହସ୍ତକାବଳ । ୪୮ ।

ପ୍ରସାଦକୁ ପରିକର୍ମୀ          କରି ସେ ବଡ଼ଏକର୍ମୀ
ରତ୍ନ ସିଂହାସନେ ହଳେ ହଳେ ନର ମହାପାପୀ ପାପସୀମା । ୪୯ ।

ନବାଙ୍କ ଦ୍ୱିତୀୟ ଦିନ    ମକର ଯାତ୍ରା ଘଅଣ
ଭୋଗ ଶେଷ ପଛେ ବୂଲଇ ମକର ତଣ୍ଡୂଳାଦି ଦଧିମାନ । ୫୦ ।

ପୂର୍ଣ୍ଣିମା ଚନ୍ଦ୍ର ଅରୂଢ଼    ଶକଳ ମାନଙ୍କ ଜ୍ୟୋତି
ଖଣ୍ଡ ଖଣ୍ଡ ମୁଣ୍ଡା ନିର୍ମଳ ନବାତ ବୋଷ୍ଠ ତୋଷ୍ଠ ସେହିମତ । ୫୧ ।

ନାନାବର୍ଣ୍ଣ ପିଠା ଯେତେ    ବର୍ଣ୍ଣନେ କହିବ କେତେ
ମହା ସୁପକାର-ମାନେ ତା ବାଢ଼ନ୍ତି ମହାପ୍ରଭୁଙ୍କ ଅଗ୍ରତେ । ୫୨ ।

ଭୋଗ ସାରି ଦେବରାଏ    ବନ୍ଦାପନା ଲାଗି ହୁଏ
ସ୍ତ୍ରୀ ନର ମିଶି ଜୟ ଜୟ ଭାଷି ଆନନ୍ଦ ପୁଲକ କାୟେ । ୫୩ ।

ଦୀନକୃଷ୍ଣ ଏହି କାଳେ    ପଶି ଲୋକଙ୍କ ଗହଳେ
ଜଗନ୍ନାଥ ଦେବରାଜଙ୍କ ଦର୍ଶନ କଲା ପୂର୍ବ ଭାଗ୍ୟବଳେ । ୫୪ ।

ମହା ଆନନ୍ଦ ହୋଇଲା    ମହା ପ୍ରସାଦ ଖାଇଲା
ଅସାର ସଂସାର ଶୋକ ଯେତେ ଥିଲା ଦୂରକରି ତା' ଥୋଇଲା ।୫୫।

ଜୟ ଜୟ ଜଗନ୍ନାଥ    ଜୟ ଶଙ୍ଖଚକ୍ର ହାଥ
ଏହି ଆଜ୍ଞା ମୋତେ ସର୍ବଦିନେ ଥିବ ଏ ମୋହର ମନୋରଥ ।୫୬।

ତୁମ୍ଭ ଶ୍ରୀମୁଖ ଚାହିଁବି    ତୁମ୍ଭ ଚରିତ ଗାଇବି
ଏହି ଆଜ୍ଞା ଦେବ ଜନ୍ମ ଜନ୍ମାନ୍ତରେ ଏହି ଷେତ୍ରରେ ରହିବି । ୫୭ ।



## ଷଷ୍ଠ ଛାନ୍ଦ

( ଘର ମୋହନ । ବସନ୍ତ ଋତୁ ଦୋଳଯାତ୍ରା ବର୍ଣ୍ଣନା )

ବସନ୍ତରାଗେ ରୂପକ ତାଳେ ଗୀୟତେ:—

ଅହେ ଜନମାନେ ଏବେ ଏକମନେ ଶୁଣ ଦୋଳ ଯାତ୍ରା କଥା
ଅରୁଣ ଉଦୟେ ଅନ୍ଧକାର ପ୍ରାଏ ନାଶ ଯାଉ ଭବ-ବ୍ୟଥା
ହେ ଜନେ ।
ଯାହା ଦର୍ଶନ କରିବାକୁ ଆଗନ୍ତୁ ଆସେ ବସନ୍ତ ନୃପତି
ଅତି ତୋଷରେ ଧରାଇ ମସ୍ତକରେ ନାଗେଶ୍ୱର ଫୁଲ ଛତି
ହେ ଜନେ । ୧ ।

ପ୍ରଫୁଲ୍ଲ ରସାଳ ବକୁଳ ଗୁମର ଗୃହ ପାରୁଶରେ ପଡ଼େ
ନାନାବର୍ଣ୍ଣେ ନବ—ପଲ୍ଲବ ପତାକା ପନ୍ତି ପନ୍ତି ହୋଇ ଉଡ଼େ
ହେ ଜନେ ।
କିଂଶୁକ କୁସୁମ ପାଠ କରବାଳ ରଙ୍ଗ କୋଷରେ ଛୁଅଇଁ
ଅଛନ୍ତି କୃଶାପ କର ଦ୍ୱିଜବର ଗୋଡରେ ଥାଇ ତା ଦେଇ
ହେ ଜନେ । ୨ ।

କେଳ କଦମ୍ବେ କେଳ କର ଭ୍ରମର କଦମ୍ବ ଝଙ୍କାର କରେ
ରାଚା ବଜେ କାଂଳେ ପରମ ମଙ୍ଗଳ ଶଙ୍ଖ ଶବଦହିଁ ପୂରେ
ହେ ଜନେ ।
କେତକୀ କୁନ୍ତ କରେ ଧରି ବାହାର ଚଢ଼ି ପବନ-ତୁରଙ୍ଗ
ଫୁଲ ଧନୁଶର ଧର କାମ ବୀର ସାଖା ଥାଇ ତାହା ସଙ୍ଗ
ହେ ଜନେ । ୩ ।

ପ୍ରବଳ କୋକିଳ—ନାଦ ବର ବାଦ୍ୟ ଶୁଭନ୍ତ ଅତି ଉଚ୍ଚରେ
ମଲ୍ଲୀ ମାଧବୀ ଛୁଟାଅନ୍ତି ସୁବାସ ଧୂପ ପୂରେ ଦିଗନ୍ତରେ
ହେ ଜନେ ।

ପ୍ରେମନ୍ତେ ହୋଇ ବସନ୍ତ ଋତୁବର ରହିଲ ମଣ୍ଡପମଣ୍ଡଳେ
ଶୃଙ୍ଗେର ରସିକ ଶୃଙ୍ଗେର ଉତ୍ସବ ଦେଖିବାକୁ ଜୁଟିଲେ
ହେ ଜନେ । ୪ ।

ମନମଥ ମନ- ମଥ ବେଶ ହୋଇ ଜଗନ୍ନାଥ ଦେବସ୍ତ୍ରୀଏ
ଅତି ଅମୂଲ୍ୟ ମଣିମୟ ବିମାନ ଆରୋହି କଲେ ବିଜୟେ
ହେ ଜନେ ।

ବାଜଇ ଘଣ୍ଟ ମର୍ଦ୍ଦଳ ଏକସଙ୍ଗ ଦୋସର କାହାଳ ସଙ୍ଗେ
ବାରବାଳା ବୃନ୍ଦ ବାହାର ଆଗରେ ବିଚିତ୍ର ସୁବେଶ ଅଙ୍ଗେ
ହେ ଜନେ । ୫ ।

ରସିକ ନାଗର ଚରଣରେ ନୃତ୍ୟ କରିବାକୁ ସେହି ପାତ୍ର
ଅବଲୋକନ ମାତ୍ରକେ କାମଶରେ ବିନ୍ଧିବ କାହାର ଗାତ୍ର
ହେ ଜନେ ।

ଯେତେ ବେଳେ ଯାଏ ପଡ଼ି ନ ଥାଇ ସେ ଭ୍ରୂଭଙ୍ଗ କଟାକ୍ଷମାଳା
ତେତେବେଳ ଯାଏ ନ ଜାଣନ୍ତି ଯୋଗୀ ମକର-କେତନ ଜ୍ୱାଳା
ହେ ଜନେ । ୬ ।

ନାସିକା ଫୁଲାଇ ବକ୍ରଦୃଷ୍ଟ ହୋଇ ମଧୁର ମଧୁ ହାସନ୍ତି
ମହା ବିବେକ—ଧୈର୍ଯ୍ୟ-ସୃଷ୍ଟିଯାକ କରନ୍ତି ସେ କରଗତ
ହେ ଜନେ !

ଏ ବସନ୍ତ କାଳେ ପ୍ରମତ୍ତ କୋକିଳ   ବଚନ କହୁଅଛି ତେଣେ
ନ ଶୁଣିଥିବା ଯାବ ଯାହା ଶ୍ରବଣେ   ସୁରମୁନି ଜଣେ ଜଣେ
ହେ ଜନେ । ୭ ।

ଯାହା ନସୁନ   ପରବାକୁ ମଦନ   ଅବଧାରି ଉହୁଥାଇ
ମହା ପ୍ରତାପୀ   ମହାରାଜା ଅଜ୍ଞାକୁ   କିଙ୍କର ପରିଏ ହୋଇ
ହେ ଜନେ ।

ବ୍ରହ୍ମାଦି ଶଙ୍କର   ଦେବଙ୍କୁ ହେଲେହେଁ ଉପ୍ରୋଧ ନ କରେ ଯେତେ
ସେହୁ ପ୍ରାଭବକୁ ଭପ୍ରେ କରି ମହା   ଯୋଗୀନ୍ଦ୍ର ପଶିଲେ ବଣେ
ହେ ଜନେ । ୮ ।

ମହାଯୋଗୀବର   ଗିରିଜାବଲ୍ଲଭ ନେତ୍ର   ଅନଳ ପତଙ୍ଗ
ତାଙ୍କ ପ୍ରସାଦେ   ଜଗତ ଜୟ କରେ   ଧରି ନ ଥିଲେ ସେ ଅଙ୍ଗ
ହେ ଜନେ ।

ଯେଉଁ ନାଗରଙ୍କ ଅଙ୍ଗହିଁ ଅନଙ୍ଗ   ପ୍ରହରଣ କରି ମାରେ
ଭୋଳା ହୋଇ କିପାଁ ଅବଳା ତାହାଙ୍କୁ   ବୋଇଲ ଅବିବେକରେ
ହେ ଜନେ । ୯ ।

ମଦନ ରଙ୍ଗରେ   ଅଛି ହରଷରେ   ପକାଉଥିଲେ ସେ ଦୃଷ୍ଟି
ନୀଳକମଳ ବୃଷ୍ଟି କଲା ପରିଏ   ଶୋଭା ପାଉଥାଇ ସୃଷ୍ଟି
ହେ ଜନେ ।

ଉଚ୍ଚ କୁଚ ପୃଥୁ   ନିତମ୍ବ ଭରରେ   କରନ୍ତେ ମନ୍ଥର ଗତି
ମତ୍ତରାଜହଂସ   ଡାକିଲା ପରିଏ   ହଂସକ ଧ୍ୱନି କରନ୍ତି
ହେ ଜନେ । ୧୦ ।

ଏମନ୍ତ ବାର ସୁନ୍ଦରୀମାନେ ନୃତ୍ୟ କରନ୍ତି ବିବିଧ ରଙ୍ଗେ
ବଡ଼ଦାଣ୍ଡେ ବଳେ ଗହଳ ଲଗାଇ ସୁର ନର ବୃନ୍ଦ ସଙ୍ଗେ
ହେ ଜନେ ।

ଫଗୁ ଉଡ଼ି ଦିଗ ଗଗନ ପୂରି ଯେ ଦିଶଇ ମହାସୁନ୍ଦର
ଅନାଇ ଭକତ ଜନମାନଙ୍କର ପୁଲକ ହୁଏ ଶରୀର
ହେ ଜନେ । ୧୧ ।

ବୃତେଶ୍ୱ ଯାତ୍ରା ସାରି ଜଗମୋହନ ଅଗ୍ନି ଉତ୍ସବ ବସଇ
ପାଠ ପଦ୍ମନୀ ଗୃମର ଚନ୍ଦ୍ରାତପେ ଦୋଳମଣ୍ଡପ ମଣ୍ଡଇ
ହେ ଜନେ !

କି କହିବ ସେ ମଣ୍ଡଣି ଆଡ଼ମ୍ବର ଦେଖିଲେ ନୋହେ ଉପେକ୍ଷି
ଚିତ୍ର ପ୍ରତିମା ପରି ଦେହ ରହଇ ଅପଲକ ହୁଏ ଆଖି
ହେ ଜନେ । ୧୨ ।

ବିଚିତ୍ର ସ୍ତମ୍ଭ— ମାନଙ୍କ ମସ୍ତକରେ ଯାତ କୁମ୍ଭ କୁମ୍ଭ ଶୋହେ
ସୁବର୍ଣ୍ଣ ଶଲାକାବଳୀରେ ପତାକା ବଳୀ କି ଶୋଭା ନ ବହେ
ହେ ଜନେ ।

ଦୃଢ଼ ପାରୁଶରେ ବିବିଧ ବର୍ଣ୍ଣିରେ ଫୁଲମାଳମାନ ଲମ୍ବେ
ମଧୁର ଝଙ୍କାର କରି ମଧୁକର ସୁମ ମଞ୍ଜୁଳୀରେ ଚୁମ୍ବେ
ହେ ଜନେ । ୧୩ ।

ନାନା ମଣିମାନ- ଙ୍କରେ ମନୋହର ମଧ୍ୟେ ଚନ୍ଦ୍ର ସୂର୍ଯ୍ୟ ରହେ
ସେଥିର ପାଠରେ ସୁବର୍ଣ୍ଣ ଦର୍ପଣ ପନ୍ତି ପନ୍ତି ହୋଇ ଶୋହେ
ହେ ଜନେ ।

ଇନ୍ଦ୍ର ଧନୁକୁ    ସମାନ କରନ୍ତ୍ୟାଇଁ   ସେ ଶୃଭୁସ୍ତି ତହିଁ ନାହିଁ
କରୁଣାକରର    ବିଜୟେ ତୋରଣା   ତହଁକ ଉପମା କାହିଁ
ହେ ଜନେ । ୧୪ ।

ଫୁଲ ଛଡ ଫୁଲ    ବିତାନ ଅନାଇ ପୁଲକ ଉଠଇ ହିଆ
ଫୁଲେ ଫୁଲେ ସବୁ ଭଅଣ ଯେଣୁ ସେ   ପ୍ରଭୁ ଫୁଲ ବନୋଦଅ
ହେ ଜନେ ।

ଫୁଲ ପଙ୍ଖା ଫୁଲ   ଆଲଟ ଚାମର    ଫୁରୁଣାରେ ଧରି ନରେ
ବେନି ପାଶରେ   ମନ୍ଦ ମନ୍ଦ ଚାଳିବା  କି କହିବି ବଚନରେ
ହେ ଜନେ । ୧୫ ।

କେତେ କହିବି   ସେ ବାହାର ମଣ୍ଡଣି  ବଚନ ମୋହୋର କେତେ
ସୁବର୍ଣ୍ଣ ବର୍ଣ୍ଣ    ବାରଣ ବୃଷ    ପଦ୍ମଯେଷ୍ଠୀ ପକ୍ଷୀ ପୁଣ ଯେତେ
ହେ ଜନେ ।

ପଦେ ପଦେ ବଜେ ବାଦ୍ୟ ଯାକ ସବୁ   ଶୁଦ୍ଧ ତୋରଣାମଧ୍ୟେ
ସୁଧା ଲେପରେ   ଚନ୍ଦନ ଜଳ ପଡ଼ି   ଅଗରୁ ଧୂପହିଁ ହୋଇ
ହେ ଜନେ । ୧୬ ।

ଏମନ୍ତ ଦୋଳ—ମଣ୍ଡପ ବିଭୂଷଣ    ବଢ଼ନ୍ତେ ରଜନୀ ଶେଷ
ଅରୁଣ ବର୍ଣ୍ଣ    ଅମ୍ବରପଥ—    ହିମଚନ୍ଦ୍ର ଚରମେ ପ୍ରବେଶ
ହେ ଜନେ

ଏମନ୍ତ ଯେ ଭାଗ୍ୟବନ୍ତ ଚନ୍ଦ୍ର ନିଶା ଦୋଳ  ନ ପାରନ୍ତି ଦେଖି
ଉଷା କାମିନୀ    ତାରକା ଅଦୃଶ୍ୟରୁ  ଦର୍ଶନ ନପାଇ ଦୁଖୀ
ହେ ଜନେ । ୧୭ ।

୪ ଜଗମୋହନ ଛନ୍ଦ

ଅତ୍ୟନ୍ତ ଭାଗ୍ୟବନ୍ତୀ ପ୍ରାଚୀ ସୁନ୍ଦରୀ ହୋଇ ଅତି ପ୍ରସନ୍ନତା
ସୁଅନ୍ତରରେ ଦର୍ଶନ କରେ ଦେଲା ସବିତା ସିନ୍ଦୂର ଟୀକା
ହେ ଜନେ ।

କୁହୁ କୁହୁ ବାଣୀ କପଟେ କୋଇଲ ସୁଦ୍ଧ ବଚନ ସେ ଭାଷେ
ଏହି ସମୟେ ପ୍ରଭୁ ବିଜେ କରନ୍ତି ଦୋଳ ମଣ୍ଡପ ପ୍ରଦେଶେ
ହେ ଜନେ । ୧୮ ।

ଢଢ ଆନକ ସୁତରି ଘନବାଦ୍ୟ ବାଜଇ ଅତି ପ୍ରବଳେ
କ୍ଷୀର ସମୁଦ୍ର ଗର୍ଜନ ଗଞ୍ଜି ହୋଏ ଜୟ ଶବଦ ଗହଳେ ।
ହେ ଜନେ

ପ୍ରଥମ ଦୋଳ ଦର୍ଶନକୁ ଉଚ୍ଛାହା ହୋଇ ଯେ ଅସନ୍ତି ଲୋକ
ଅବନୀ ମଣ୍ଡଳ ଅଦୃଶ୍ୟ ହୁଅଇ ଆନନ୍ଦ ହୋଏ ଅନେକ
ହେ ଜନେ । ୧୯ ।

ନବୀନ-ରସାଳ— ଫଳ ଫଳଦାତା ପ୍ରଭୁଙ୍କ ଛାମୁରେ ଦେଇ
ନାନା ପ୍ରକାରେ ବରମାନ ମାଗନ୍ତି ଅନୁରାଗବନ୍ତ ହୋଇ
ହେ ଜନେ ।

ବାଞ୍ଛାନିଧି ସେ ବାଞ୍ଛା ପୂର୍ଣ୍ଣ କରନ୍ତି ପରମ ଦୟାଳୁ ଯହୁଁ
ଅଶେଷ କୋଟି ଜନମ ପାପରାଶି ବିନାଶନ୍ତି ଗୃହୁଁ ଗୃହୁଁ
ହେ ଜନେ । ୨୦ ।

ଆହେ ଜନମାନେ ଦେଇଅଛ କାହିଁ ହୋଇଥିଲେ କେ ପଞ୍ଚାଇ
ଦେଖିଲା ଲୋକଙ୍କୁ ମହାସୁଖ ଦେଇ ଦୁଃଖ ନିଅନ୍ତି ଦୂଷାଇ
ହେ ଜନେ ।

ଆପଣା ଉତ୍ସବେ ଉତ୍ସବ ଦେବାକୁ ସେହୁ ପ୍ରଭୁ ଶବେଙ୍କତା
ଯଉଁ ଉତ୍ସବରେ ବିଧବା-ଲଲାଟେ ଶୋଭା ରଙ୍ଗ ଫଗୁ ଛଟା
ହେ ଜନେ । ୨୧ ।

ଯତି ସନ୍ନ୍ୟାସୀ ନାଙ୍କ ସଙ୍ଗେ ମିଶି ଦର୍ଶନ କରନ୍ତି ରଙ୍ଗେ
ଦୂଷଣ ନୋହେ ଭୂଷଣ ପ୍ରାୟେ ହୋଇ କୁଙ୍କୁମ ଲାଗିଲେ ଅଙ୍ଗେ
ହେ ଜନେ ।

ଏମନ୍ତ ହୋଇ ସେ ବଟ ନାଗରଙ୍କ ଦୋଳ ମହୋତ୍ସବ ଲୀଳା
ବ୍ରହ୍ମାଦି ଦେବ ମାନବ ବାଳବୃଦ୍ଧ ସମସ୍ତେହେଁ ଯହିଁ ଭୋଳା
ହେ ଜନେ । ୨୨ ।

ମନେ ଜ୍ଞାନେ ଲୀନ କରି ଯୋଗୀଜନମାନେ ଯାହା ନ ଦେଖନ୍ତି
ସେ ପ୍ରଭୁ ଏମନ୍ତ ମହାଦୟାବନ୍ତ ମାନବ ସଙ୍ଗେ ଖେଳନ୍ତି
ହେ ଜନେ ।

ଦନ୍ତିଦନ୍ତ ଦୋଳା ଉପରେ କମଳା—ବକ୍ଷର କମଳା ଲୀଳା
ଭାବିଲେ ସେ କାଳ ନାହିଁ ନାହିଁ କାଳଦଣ୍ଡ ଭବଭୟ ଜ୍ୱାଳା
ହେ ଜନେ । ୨୩ ।

ଦ୍ୱିତୀୟ ଦୋଳ ଅତିବଡ଼ ଗହଳ ନୃପତି ଦର୍ଶନ କରେ
ମହା ପାପରାଶି ଛିନ ତାପ ନାଶି ମହାପାତକୀ ନିସ୍ତରେ
ହେ ଜନେ ।

ତୃତୀୟରେ ବିଜେ ଦେବାଧିଦେବ ବିଜେ ବାଜେ ଘଣ୍ଟା ଘନ ଘନ
ଚନ୍ଦ୍ରକୁ ଚକୋର ପ୍ରାୟେ ସୁର ନର ସବୁରି ଏକ ନୟନ
ହେ ଜନେ । ୨୪ ।

ମଣୋହି ବସଇ  ବନ୍ଦାପନା ହୋଇ  ସାରି ତୃଷ୍ଣପ୍ର ଦୋଳକୁ
ସମସ୍ତ ଲୋକଙ୍କୁ ଗନ୍ଧ ଦାନ ଦେଲେ  ଭବ ସିନ୍ଧୁ ତରିବାକୁ
ହେ ଜନେ ।

ବିମାନ ଅରୋହି  ପ୍ରଭୁ ଭାବଗ୍ରାହୀ  ବୁଲି ଦୋଳ ମଣ୍ଡପକୁ
ନୀଳାଦ୍ରି ନବରକୁ ବିଜେ କରି ସେ  ମଣ୍ଡନ୍ତି ସିଂହାସନକୁ
ହେ ଜନେ । ୨୫ ।

ଏମନ୍ତ ହୋଇ  ସେ ଜଗନ୍ନାଥ ଦେବ ନୃପତିଙ୍କ ଦୋଳ ଲୀଳା
ପାଇଲେ ଏ ଲୀଳା ଲୀଳା ଭବସୂତେ  ଗୁନ୍ଥି କଣ୍ଠେ କର ମାଳା
ହେ ଜନେ ।

ନୋହିଲେ କଣ୍ଠି  ମଣ୍ଡନ କରି କର  ଲୋକଙ୍କୁ ସୁନ୍ଦର ଦିଶୁ
ଜଗନ୍ନାଥ-ଭାବ  ନ ଜାଣିଲ ଲୋକ  ସହଜେ ଦ୍ୱିପାଦ ପଶୁ
ହେ ଜନେ । ୨୬ ।

ଯଉଁ ମାୟାଧର  କରନ୍ତି ମଣ୍ଡନ  କେତେ ଦିନ ଅବା ଥିବ
ନାମ ଅଳଙ୍କାର  ପରିଧେ ଶରୀର  ସଙ୍ଗତରେ ଏ ନ ଯିବ
ହେ ଜନେ ।

ଯେବେ ଭବଦୁଖୁ  ହରି-ଗତିସୁଖ  ପାଇବାକୁ ଅଛି ମନ
ନାମ ସୁବର୍ଣ୍ଣି  ଯତନ କରି କଣ୍ଠିହିକଟିରେ ଭୂଲ ହେନ
ହେ ଜନେ । ୨୭ ।

ହୃଦ ପଦୁଅରେ  ଥିଲେଟି ବେଳରେ କରିବ ଏ ଉପକାର
ପଡ଼ିଗଲେ କାଳେ  ନ ବାଧିବ ତଳେ  ଦୁସହ କାଳ କାନ୍ତାର
ହେ ଜନେ ।

ଏକା ଜଗନ୍ନାଥ ନାମ କଣ୍ଠି କଣ୍ଠ ଦେଶରେ କର ଭୂଷଣ
ଯିଲେ କରକୁ ମଣ୍ଡନ କର କର ଉତ୍ତମ ଦାନ କଙ୍କଣ
ହେ ଜନେ । ୨୮ ।

ଦୟା ଆଭରଣ ହୃଦୟରେ ଧର ସଂସାର ସୁନ୍ଦର ଏହୁ
ବାର ନାରୀ ପ୍ରାୟେ ବେଶ ହୋଇବାରୁ କହୁଛୁଁ କାରଣ ନାହିଁ
ହେ ଜନେ ।

ବିବେକ ବୁଦ୍ଧିରେ ବିଗ୍ରହ ଧର ମୋ କହିଲେ ଅବା କି ହେବ
କୃପଣକୁ ଦେଖି ସୁତ କନ୍ୟା ପ୍ରାୟେ ଭ୍ରମଇଁ ଯିବା ରହିବ
ହେ ଜନେ । ୨୯ ।

ଦୀନକୃଷ୍ଣ ବୋଲେ ଭଲ ହେବା ହେଲେ ଜଗନ୍ନାଥ ନାମ ଘୋଷ
ଯେତେବେଳେ ପଡ଼ି ଯିବ କାଳଧାଡ଼ି ନୋହିବ ସେ ଅବକାଶ
ହେ ଜନେ ।

ଏହୁ ଲାଗେ ପାଦ ପଞ୍ଜର ମଧ୍ୟରେ ଶୁକ ପ୍ରାୟେ ହୋଇ ପଶ
ହରେ ରାମକୃଷ୍ଣ ଗୋବିନ୍ଦ ଗୋପାଳ ଅନନ୍ତ ଅଚ୍ୟୁତ ଭାଷ
ହେ ଜନେ । ୩୦ ।



# ସପ୍ତମ ଛାନ୍ଦ

(ଗ୍ରୀଷ୍ମଋତୁ ଚନ୍ଦନ ଯାତ୍ରା ବର୍ଣ୍ଣନ)

ବସନ୍ତ ବଟେ, ମଙ୍ଗଳ ଚଉଦଶୀ ବାଣୀରେ ଗାଇବ ।

ଅହେ ସାଧୁମାନେ ଶୁଣ ଏକମନେ ଚନ୍ଦନ ଉତ୍ସବ ଚରିତ
ଗ୍ରୀଷମ ଋତୁରେ ଦିନକର-କରେ ମହୀ ହୋଏ ମହାତପତ
ସଜ୍ଜନେ !
ଶୁଖନ୍ତି ମହା ସରୋବର ।
ମହା ବିରହିଣୀ-ପ୍ରାୟେ ତରଙ୍ଗିଣୀମାନେ ହୁଅନ୍ତି ଶୀର୍ଣ୍ଣତର । ୧ ।

କୁଟୁମ୍ବୀ ଦୀନଜନ ମନ ପରାଏ ବିବଶ ହୋଏ ସନ୍ତପତ
ଦିଶେ ଦିଶେ ମୃଗତୃଷ୍ଣା ନୃତ୍ୟ କରେ ମୃଗାକ୍ଷି ନୟନ ଯେମନ୍ତ
ସ୍ୱଜନେ !
ଜାତ ହୋଏ ବାତମଣ୍ଡଳୀ ।
ଠାବେ ଠାବେ ତରୁ ଲତାମାନେ ପୂରି ଅତପଘାତରେ ମଉଳି । ୨ ।

ମହାତାପରେ ପଣ୍ଡିତ ପ୍ରାୟେ ମଧୁପାଣ୍ଡବ ହରଷ ସୁମନ
ନ ଛାଡ଼ି କାମ ବୃତ୍ତି ଦୂତୀଭାବକୁ ପ୍ରଫୁଲ୍ଲ ଫୁଲରେ ଶୋଭନ
ସ୍ୱଜନେ !
ହେଲେ ସୁକୁମାର ଶିରୀଷ
ଢେଡ଼େ ନୀରସରେ ଶରଣେ ବିକାଶ ବାସରେ ପୂର୍ଣ୍ଣ କରେ ଦିଶ । ୩ ।

ବନେ ବନାନଳ ଜଳନ୍ତି ପ୍ରବଳ ଫୁଟନ୍ତି ତୃଣଧ୍ୱଜମାନେ
ଶିମୁଳୀ ଫୁଲ ଫୁଟି ତୁଳା ସଂଘାତ ଉଡ଼ନ୍ତି ପବନେ ଗଗନେ
ସ୍ୱଜନେ !
ବନଜୀବେ ବଡ଼ ଅକୁଳ
ବନ୍ୟ ବାରଣ ଅନେକ କଷଣ ଲଭନ୍ତି ନ ପାଇ କମଳ । ୪ ।

ଗ୍ରୀଷମେ ବକୁଳ ଦୋଉ ପକ୍ଷିକୁଳ ଲୀନ ହୋଏ ତରୁମାନଙ୍କେ
ଯେନ ଉତ୍ତୁଗାର ଗନ୍ଧବା ବଇଶ ଲୋଟନ୍ତି ପଡ଼ି ପାଦପଙ୍କେ
ସୁଜନେ !
ମୟୂର ପୁଚ୍ଛ ଛାଇତଲେ ।
ଭୟକୁ ପକାଇ ଭୁଜଙ୍ଗମ ଯାଇଁ ଶୟନ କରଇ ବକତଲେ ।୫ ।

ମତ୍ସ୍ୟ କଚ୍ଛପ ମଣ୍ଡୂକମାନେ ମୂର୍ଚ୍ଛାଗତ ହୋଅନ୍ତି ଅଳ୍ପଜଳେ
ପଥିକମାନେ ପଥଶ୍ରମେ ପ୍ରବେଶ ହୁଅନ୍ତି ବନ୍ଧୁପାଦତଳେ
ସୁଜନେ !
ଅତଏ ତୁଙ୍ଗସ୍ତନାମାନେ ।
ତୁଙ୍ଗସ୍ତନରେ ଚନ୍ଦନ ପଙ୍କ ଲେପି ପ୍ରବୋଧ ଲଭନ୍ତି ବଦନେ

ଠାବେ ଠାବେ ଜଳ କ୍ରୀଡ଼ାରେ ଚଞ୍ଚଳ ଚଞ୍ଚଳାପ୍ରଭନେତ୍ରାମାନେ
କେ ଅଗ ବୁଡ଼ି ପଛେ କେ ଖେଳନ୍ତି କେ ଜଳ ପକାନ୍ତି ସଘନେ
ସୁଜନେ !
ଜଳ କୁସୁମ କେ ତୋଳନ୍ତି ।
ପଥଁ ଘ ଗୋଡ଼ାଇ କେତେ ଗଙ୍ଗ କଉ ଅନକୁ ଉଠାଇ ଗେଲନ୍ତି ॥

ପଣା ପଇଡ଼ ପଣସ ପକ୍ୱ ଅମ୍ର ବିପ୍ର ବଦନେ କେ ଦଅନ୍ତି
ପଣାଛତ୍ର ଦେଇ କେ ପୁଣି ପବିତ୍ର ମନରେ ଆନନ୍ଦ ହୁଅନ୍ତି
ସୁଜନେ !
ଶିବେ କେ କରେ ଜଳଶାଇ ।
ସେବକ ମାଳୀମାନେ ଉଚ୍ଚେ ଡାକନ୍ତି ଜଳ ଘଟମାନ ବସାଇ ।୯।

ଜଗନ୍ନାଥ ଅନୁଗ୍ରାହୀ ଲୋକମାନେ ଜଳଯନ୍ତ୍ର ପୁରେ ପ୍ରବେଶ
କର୍ପୂର ଚନ୍ଦନ ଅଙ୍ଗେ ବିଲେପନ ପଙ୍ଖା ପବନରେ ସନ୍ତୋଷ
ସୁଜନେ !
ହନ ହରନ୍ତି ସେ ହରଷେ ।
ବାସୁଦେବ କଥା ଅମୃତ ମିଶାଇ ବୀଣା ମର୍ଦ୍ଦଳ ଗୀତ ରସେ ।୧୦।
ଏମନ୍ତ ସମୟେ ଦେଖି ଦେବଗୟେ ବ୍ରହ୍ମାଣ୍ଡ ଶୀତଳ ଅର୍ଥରେ
ଅନେକ ଚନ୍ଦନ ସୁବାସ କର୍ପୂର ଲାଗି ହୁଅନ୍ତି ଶ୍ରୀଅଙ୍ଗରେ
ସୁଜନେ !
ବାଜଇ ନାନା ବାଦ୍ୟମାନ ।
ଘଣ୍ଟ ମର୍ଦ୍ଦଳ ବେଣୁ ବୀଣା ଗୀତରେ ପୂରଥାଇ ଜଗମୋହନ ।୧୧।
ବିଚିତ୍ର ବିବିଧ ବିଚିତ୍ର ବେଶମାନ ହୋଇ ନୃତ୍ୟ କରନ୍ତି ଅପସରୀ ।
ପଙ୍ଖା ଚାମର ଆଲଟ ପଡ଼ିବାରେ ଚୋରୀ ଉପରେ ଦଶେ ଡେରି ।
ସୁଜନେ !
ତେତେବେଳେ ଯେଉଁ ଆନନ୍ଦ ।
ଅବଲୋକନ କଲା ଲୋକ ଜାଣଇ ଜାଣନ୍ତି ପ୍ରଭୁ ଆନନ୍ଦକନ୍ଦ ।୧୨।
କର୍ପୂର ଉଷ୍ମା ପଚନ ଲାଗିହୋଇ ଅଶେଷ ପରମ ମଙ୍ଗଳ
ବର କବର ଅଳକା ଏକ ସର ଦୋସର ଫୁଲ ଚୂଳମାଳ ।
ସୁଜନେ !
ସେହୁ ପ୍ରଭୁଙ୍କ ଶୋଭା ପାଏ ।
ଥାଉ ସେ ଚନ୍ଦନ-ଯାତ୍ରା-ବେଶ ମନେ ପିଣ୍ଡରେ ପ୍ରାଣ ଥିବାଯାଏଁ ।
କର୍ପୂର ଲାଗ ସାର ଭୋଗ ବସଇ ହୁଅନ୍ତେ ପ୍ରଭୁ ବନ୍ଦାପନା
ମହା । ତକ୍ତା ସୁନାଶିର ହୁଅନ୍ତି କାଲକୁ ସେ କାଲ ଭାବନା
ସୁଜନେ !

ଆଭରଣ ହୋଇ ଯାନଙ୍କୁ ।
ବଡ଼ଦାଣ୍ଡେ ବଡ଼ ଗହଳ ଲଗାଇ ବିଜୟେ କରନ୍ତି ଚାପଙ୍କୁ । ୧୪ ।
ଭବଜଳ ରାଶି ମଧ୍ୟରେ ନ ଭାସି ଯେଉଁ ପ୍ରଭୁ ନାମ ବଳରେ
ସେ କାଳ ବଳରେ କଉତୂହଳରେ ବୁଡ଼ନ୍ତି ଅଳପ ଜଳରେ
ସୁଜନେ !
ରସିକନାଗର ଶେଖର ।
ନୃତ୍ୟ ଗୀତ ରସଭାବେ ବଡ଼ ବଶ କ୍ଷଣେ ନ କରନ୍ତି ଅନ୍ତର ।୧୫।
ଦେଖି ହନ ଶେଷ ହୋଇ ଦିବ୍ୟ ବେଶ ଚାପରେ ବିଜଏ କରନ୍ତି
ଖଦ ଚାମର ଆଲଟ ପଙ୍ଖା ଧରି ସେବକେ ଖଟଣୀ କରନ୍ତି
ସୁଜନେ !
ଧରି କେ ଚନ୍ଦନ ପେଟିକା ।
ଅଗେ-ପାଶେ ରହି ଆନନ୍ଦକୁ ବହି ମାରନ୍ତି ଆରୋହି ନଉକା ।୧୬
ମଣ୍ଡପ ଅଙ୍କେ ମଣିମୟ ପଲଙ୍କେ ବନ୍ଧୁମୂଳୀ ଦିବ୍ୟ ବିଠଙ୍କେ
ଅପସରଙ୍କୁ ଅପସରା ବିଜୟେ କରଥାନ୍ତି ପ୍ରଭୁ ଜଣଙ୍କେ
ସୁଜନେ !
ଚନ୍ଦ୍ରଉଦୟା ଚନ୍ଦ୍ର ଦୀପ ।
ଚାରିପାଶେ ଲାଗି ଶୋଭା ପାଉଥାଇ ଚହଟି ଥାଇ ଗନ୍ଧ ଧୂପ । ୧୭ ।
ଚାରୁ ଚାମୀକର ଚମ୍ପକବରଣୀ ଚଞ୍ଚଳ ଚାମର ଲୋଚନୀ
ଚଉଷଠି କଳା ରସରେ କୁଶଳା କନ୍ଦର୍ପଦର୍ପବିମୋଚନୀ
ସୁଜନେ !
ଚନ୍ଦ୍ରବଦନୀ ଚାରୁକେଶୀ ।
କୁନ୍ଦସୁନ୍ଦରଦଶନୀ ମନ୍ଦହାସୀ ମଧୁରମୃଦୁପିକଭାଷୀ । ୧୮ ।
ନିତମ୍ବିନୀ ଉଚ୍ଚକୁଚ-ଶୋଭିନୀ ଘନଜଘନୀ ନୃତ୍ୟକାରୀ
ତାଳ ମାନ ଗ୍ରହ ଲୟରେ ଅରହ ସକଳଜନମନୋହାରୀ

ସୁଜନେ !
ନୃତ୍ୟ କରନ୍ତି ସେ ହରଷରେ ।
ନାନା ଅଳଙ୍କାର ଅଙ୍ଗେ ଅଳଙ୍କାର କରି ହସ୍ତକ ହରଷରେ । ୧୯ ।
ମନମଥ ପାଶ ପରି ଏ ପ୍ରକାଶ ଶୋଭା ହସ୍ତକ ହସ୍ତ ଭୋଗ
କେବଳ ସେକାଳେ ଶମଦମ ବଳେ ନୋହେ କାହାର ମନ ଭୋଗ
ସୁଜନେ !
କେତେ କହିବି ସେ ଚରିତ ।
ଚନ୍ଦ୍ର ଉଦେ କାଳେ ଗଗନମଣ୍ଡଳେ ସହଜେ ନ ଦିଶେ ଖଦ୍ୟୋତ ॥
ଜଗତ କୃତାର୍ଥ କରିବାକୁ ପଥ ରଥରେ ବିଜେ ଜଗନ୍ନାଥ
ଦରଶନେ ଜନଙ୍କର ଦରଶନେ ମହା ପରମ ଗତିପଥ
ସୁଜନେ !
ଧନ୍ୟ ସେ ନାୟିକା ବିହାର ।
ଇନ୍ଦ୍ରପଦ ବହି ଇତର ଦିଶଇ ସେ ଅବଲୋକନ ଯାହାର । ୨୧ ।
ବୃନ୍ଦାରକବୃନ୍ଦ ବିମାନେ ଆନନ୍ଦ ଜୟ ଜୟ ସ୍ତୁତି କରନ୍ତି
ଦୁନ୍ଦୁଭି ବଜାଇ ସପୁଲକ ହୋଇ ଶିରେ କୁସୁମ ବରଷନ୍ତି
ସୁଜନେ !
ଯାତା ବଢ଼ାଇ ଦେବରାଏ ।
ବିମାନ ଆରୋହି ଜନମନ ମୋହି କରନ୍ତି ବାହୁଡ଼ା ବିଜୟେ । ୨୨ ।
ଢେଢାତପତ୍ର ଚନ୍ଦ୍ର ସୂର୍ଯ୍ୟ ତରସ କଳା କନାଠୀ ମାଳ ମାଳ
ଖଦି ଚାମର ଅଲଠ ପଙ୍ଖା ଲେଖା କହି ନୋହଇ ସେ ପ୍ରବଳ
ସୁଜନେ !
ଚନ୍ଦ୍ରଚାପ ଚନ୍ଦ୍ରଉଦୟା ।
ହୁଲା ଦହୁଡ଼ି ଯାଉଁ ଯାଉଁ ଲୁଚି ସେ ନ ଦେଖାନ୍ତି ଚନ୍ଦ୍ରଉଦୟା ।୨୩।

ବାଟ ଯାକ ରଙ୍ଗଭୂମି କର ରଙ୍ଗ କରନ୍ତୁ ବର-ବାରାଙ୍ଗନା
କାମଶାସ୍ତ୍ର କଥା ସଙ୍ଗୀତ-ଜାଣନ୍ତା ସମସ୍ତେ ପ୍ରେମ ପ୍ରୀତଯୋଜନା

ସୁଜନେ !

ଧନ୍ୟ ତାହାଙ୍କ ଭାଗ୍ୟରାଶି ।

ଧୂପ ସାର ବଡ଼ଶିଆର ବଢ଼ାଇ ପୁଷ୍ପ ଅଞ୍ଜୋଳ କର ଶେଷେ

ସୁଜନେ !

ପହୁଡ଼ନ୍ତୁ ଦିବ୍ୟ ପଲଙ୍କେ ।

ପ୍ରାଣର ବଲ୍ଲଭୀ ପାଟ ମହାଦେବୀ କମଳା ସେବନ୍ତୁ ନାଥଙ୍କେ । ୨୪ ।

ନିତ ଏହିମତ ଚନ୍ଦନ ଉତ୍ସବ ହୁଅଇ ସ୍ନାନ ଯାତ୍ରା ଯାଏ ।
ତାହିତ ଶୁଣିମ ଘନତାପ ଯିବ ସଦା ପବିତ୍ର ହେବ କାୟେ

ସୁଜନେ !

ସଂସାରେ ଏହି କଥା ମୋକ୍ଷ ।

ଏ ବାହାରେ ଅଉ ଯେତେକ ଦେଖୁଛ ଇନ୍ଦ୍ରଜାଲରୁ ବଳି ମିଛ ।୨୫।

ଯେଉଁ ଦେହ ଘେନି ଜନମି ଅବଶ ତାହା ନ ନେଇ ଯିବାବେଳେ
ମୋହୋ ଘର ମୋହୋ କୁଟୁମ୍ବ ବୋଲିଣ ଅବୋଧ ମାୟାମୋହ ଜାଲେ

ସୁଜନେ !

ମନେ ବିଚାର କର ଏହି ।

କେ କାହାର ତାତ କେ କାହାର ମାତ କେ କାହାର ଭାଇ ବନ୍ଧୁ ସାହି ।

ପାରିଲେ ଦୀନଜନରେ ଦାନ ଦେଇ ସକଳ ଜୀବେ ଦୟା କର
ଧର୍ମ କର୍ମ କର ଭିନ୍ନ ନ ବିଚାର ସାଧୁ ସଙ୍ଗତରେ ବିଚର

ସୁଜନେ !

ଯଉଁ ଶ୍ରୀନୀଳଗିରିନାହା ।

ମନ ବଚନ କର୍ମେ ବ୍ୟେ ଦୀନକୃଷ୍ଣ ଭରସା କରିଅଛି ତାହା । ୨୬ ।



# ଅଷ୍ଟମ ଛାନ୍ଦ

( ଗୁର୍ଜ୍ଜରୀ ରାଗେ ଝମ୍ପା ତାଳେ ଗୀତରେ )

ଅହେ ସାଧୁଜନମାନେ କର ଶ୍ରବଣ
ମହା ଗ୍ରୀଷମ ଋତୁରେ ଆରତତ୍ରାଣ ।
ଅନେକ ଚନ୍ଦ୍ର ଚନ୍ଦନ ଚର୍ଚ୍ଚିତ ହେଲେ
ଅନେକ ଶୀତଳ ଦ୍ରବ୍ୟ ତ ମଣୋହି କଲେ
ଅନେକ ଆଲଟ ଲାଗି ହେଲେ ନରଙ୍ଗ
ଏତେକେ ସନ୍ତାପିତ ହୋଇଲା ଶ୍ରୀଅଙ୍ଗ । ୧ ।

ସ୍ନାନ କରିବାକୁ ମନେ ବିଚାର କରି
ସମ୍ଭ୍ରମ ହୋଇଲେ ଶଙ୍ଖ ଶାରଙ୍ଗଧାରୀ ।
ଘନ ମଣ୍ଡପକୁ ସୁଧା ଲେପ ଦିଆଇ
ମଣ୍ଡଣି ନିମିତ୍ତରେ ଭଣ୍ଡାର ଫିଆଇ ।
ପାଟ ନେତ ପତନୀ ଚିତ୍ରିଆ ଚାମର
ସବୁ ଚନ୍ଦ୍ରାତପମାନ କଲେ ବାହାର । ୨ ।

ସାଥି ବନ୍ଧ ସୁରଙ୍ଗ ସିନ୍ଦୂର ଅମ୍ବର ।?
ମଣ୍ଡିବାରେ ଆଡ଼ମ୍ବର ଦିଶେ ଅମ୍ବର
ଫୁଲ ଚକ୍ର ମଧ୍ୟେ ଫୁଲ ଝମ୍ପା ଶୋଭନେ
ଅବଲୋକନରେ ମନ ନୟନ ରଞ୍ଜେ ।
ଫୁଟିଲା ସୁବର୍ଣ୍ଣପଦ୍ମ ଦିଶିଲା ତୋଷ
ତାରତର ମୁକୁତା ମଣି କେଶ କେଶ । ୩ ।

ବିବିଧ ଚିତ୍ର ପ୍ରତିମା-ମାନଙ୍କୁ ଦେଖି
ତୃପ୍ତ ପ୍ରାୟେ ନ ଚଳଇ ଏ ଆଖି ।

ଚନ୍ଦନ ଜଳ କର୍ପୂର ଧୂଳି ପିଶାଇ
ଅଗୁରୁ ଧୂପରେ ସୁବାସିତ କରାଇ ।
ବଳେ ବାଟ ଯାକ ଏହି ପ୍ରକାରେ ତୋରା
ମଣି ଧରଣୀ ମସ୍ତକ ମଣ୍ଡନ ପରା ।
ଛଇଳ ନାଗର ପ୍ରଭୃ ପୁରୁଷ ସିନ୍ଧୁ
ଏକେତ ସକଳ କଳାବନ୍ତ ଅବନ୍ଧୁ ।
ନୋହିଲେ ନକ୍ଷ ସ୍ଥାନକୁ ଆରମ୍ଭ ଏତେ
ମୁଁ କେତେ କହିବ ତୁମ୍ଭେ ଶୁଣିମ କେତେ ।
ଶେଷ ନୁହଇ ଅଶେଷ ଅପରିମେୟ
ସପ୍ତପଞ୍ଚ ତରଙ୍ଗ ଗଣିଲା ପ୍ରାୟ ।
ନାନାରୂପେ ମଞ୍ଚାମଣ୍ଡପକୁ ମଣ୍ଡାଇ
ଭଳ ଲୋକଙ୍କୁ ଉଚାଟ ବଳେ କରାଇ ।
ସଜ ଲାଗି ବଳେ ରାଜ ପଥରେ ଥାଉଁ
ସଜ ସାଜ ସାଜ ବୋଲି ବାଜେ ସଜାଉ ।
ସୁର ନର ଅସୁର ଗନ୍ଧର୍ବ ବାଦ୍ୟରେ
ସମୁଦ୍ର ଉଚ୍ଛୁଳ ସୁର ବର୍ଜିନ ପୁରେ ।
ଅନେକ ହୁଲା ଦହୁଡ଼ି ଚନ୍ଦ୍ର ଉଦୟା
ଚନ୍ଦ୍ରଦୀପ ଲାଗି ଭ୍ରଜେ ଚନ୍ଦ୍ର ଉଦୟା ।
ଅବିରତେ ଗହଳ ଚହଳ ଆନନ୍ଦ
ଅମ୍ବରେ ରହି ଦେଖନ୍ତି ଅମର ବୃନ୍ଦ ।
ଅପସରା-ମାନେ ନୃତ୍ୟ କରନ୍ତି ମିଳି
ଝଟକ ନକୁଳ ଅଙ୍ଗମାନ ଭୁଲାଳି ।
ଅଗୁରୁ ଧୂପ ସମସ୍ତ ନଗରେ ବାସେ

ଯଥା ବନ୍ଦିପ୍ରାସ୍ତେ ସ୍ୱର୍ଗ ଫୁଲ ବରଷେ ।
ଧବଳ ଛତ୍ର ଉଦୟ ପାଶରେ ଉଡ଼େ
ଝାଦ ଚାମର ଅଲଟ ପାରୁଟେ ପଡ଼େ ।
ମହିମା ତାଙ୍କ ଗରିମା କି କହି ତହିଁ
ଅଣିମାଦି ସମ୍ପଦା ବିଜୟେ ଯହିଁ । ୮ ।
ଜୟ ଜୟ ଶବଦ ଶୁଭଇ ଅନେକ
ଏକଖଣ୍ଡ ଚଉଦିଶ ବ୍ରହ୍ମାଣ୍ଡଲୋକ ।
କେ କେତେ ଗୀତ କବିଦ୍ଧ ସ୍ତୁତି କରନ୍ତି
ଅବ ଲୋକନେ କଳିକଳୁଷ ହରନ୍ତି ।
ଅହା ସେ ସିନ୍ଦୂର ଗନ୍ତା ପାଗ ଶୃଭୂଷା
ଚାହିଁଲେ ମନ ଆନନ୍ଦେ ଭରଇ ପୂର । ୯ ।
ଶ୍ରୀ ବଳଭଦ୍ର ସୁଭଦ୍ରା ସୁଦରଶନ
ଆଗରେ ଚଳାଇ ପଛେ ଜଗମୋହନ ।
ଶ୍ରୀକର ପଇଠି ଦେଇ ଭକ୍ତଙ୍କ କରେ
ଭଙ୍ଗିମା ଭଙ୍ଗିମା ହୋଇ ବିଜେ ସଧୀରେ ।
କି ଉପମା ଦେବା ଯହିଁ ବଚନ ନାହିଁ
କବି ହେଲେ କଉଁଠାରେ କାହା ନ କହି ।
ନାନା କାମନା କାମିଙ୍କୁ ଦେବା ଅର୍ଥରେ
ବିଚର କଳ୍ପତରୁ କି ଗଲେ ପୃଥୀରେ ।
ଏମନ୍ତ କଳ୍ପନାରୁ ବା କହି ହୁଅନ୍ତା
ଯେବେ ସେ ଅମୃତ ଫଳ ଦାନ ଦିଅନ୍ତା ।
ସଂସାର ଶୋକ ହରିବା ତହିଁରେ କାହିଁ
ଏହି ଯେଣୁ ଦୃଷ୍ଟିକି ସେ ଆସଇ ନାହିଁ ।

ପୂର୍ଣ୍ଣଚନ୍ଦ୍ରମା ମଣ୍ଡଳରେ ଖେଳେ କି ଆସି
ଏ ଆଶ୍ଚର୍ଯ୍ୟ କଥା କହନ୍ତାଇ ଭରସି ।
ଏବେ ସେ ଦିବସେ ପୂର୍ଣ ଜ୍ୟୋତି ବହନ୍ତି
ଅକଳଙ୍କ ସଦା ପୂର୍ଣ୍ଣଭାବେ ଥାଆନ୍ତି ।
ଅନ୍ଧ ଅନ୍ଧକାର ବିନାଶି ହରନ୍ତି ଦୁଃଖ
ଶାନ୍ତି ବ୍ରହ୍ମ ପରଶନ୍ତେ ଦିଅନ୍ତି ସୁଖ ।
ଉପମାକୁ ନୁ ଆସଇ ପ୍ରଭୁଙ୍କ ବଦନେ
କଳେ ଲେଖା ହେବା ଅବିବେକ ନର୍ତ୍ତନେ ।
ଭୂଲରେ ସମାନ ନୋହୁ ସକଳ ପୁରେ
ଏତେବେଳେ ଦେଖ ରହିଛନ୍ତି ଉପରେ ।
ଅଗଣ୍ଡ ଲୋକର ଯହିଁ ଗଣ୍ଡହି ପଣ୍ଡ
ଧନ୍ୟ ଧରଣୀଭାଗ୍ୟ ତା ଶିରେ ବହନ୍ତି । ୧୩ ।
ଅଳପ ହସିଲ୍ଲ ହୋଇ ରଙ୍ଗାଅଧରେ
ଅପସରି ସେବକ ମାନଙ୍କ ଉପରେ ।
ଅଳପ ବିଶ୍ରାମ ଯହିଁଠାରେ କରନ୍ତି
ସବୁ ସୁଖ ସମ୍ପତ୍ତି ସେଠାରେ ଦିଅନ୍ତି ।
ଯହିଁ ଅଙ୍ଗେ ପଡ଼ଇ ସେ ଅମୃତ ଦୃଷ୍ଟି
ସେ ଦିଶେ ବୃଷ୍ଟି ହୁଅଇ ଆନନ୍ଦ ସୃଷ୍ଟି । ୧୪ ।
ମତ୍ତଗଜ ପ୍ରାୟେ ବେନି ପାଶରେ ଝୁଲି
ମହାଭୁଜଦ୍ୱୟରେ ଭାବେ ଭକ୍ତଙ୍କୁ ତୋଳି ।
ପୁଣି ଝିଙ୍କ ବଙ୍କିମିଲ୍ଲ ପରାଏ ହୋଇ
ମନ୍ଦ ମନ୍ଦ କର ପାଦପଦ୍ମ ପକାଇ ।
କେବେ ହେ କହିବ ସେ ଶୀଳବା ଶୁଭୁଷି

ଯେହ୍ନଂ ଶୃଭୁଶ୍ରୀରେ ଶେଷ ହୋଏ ଶର୍ବରୀ ।
ରଜତ ଗିରିକ ଗଜ ଉଠିଲା ପ୍ରାୟେ
ଅବ୍ରୋହଣେ ଅବ୍ରୋହନ୍ତି ଦେବାଧିରାୟେ ।
ପ୍ରବେଶ ସ୍ନାନମଣ୍ଡପ ଚକା ଉପରେ
ସେ ଶୋଭାକୁ ଉପମା ନ ଦିଶେ ସଂସାରେ ।
ହରିହର ଶିଖରେ ବା କଇଲାସରେ
କେହି କେହି ଏମନ୍ତ ଭାବନ୍ତି ମନରେ ।
ରଜତ ପର୍ବତେ ହୀରା ମର୍କତ ଶୃଙ୍ଗ
ମଧ୍ୟରେ ସୁବର୍ଣ୍ଣ-ଲତା ହୋଇଛି ସଙ୍ଗ ।
ଏମନ୍ତ ବୋଲିବାକୁ ବଚନ ନ ଆସେ
ଅଲକ୍ଷରେ ଲକ୍ଷ କେତେବେଳେ ହେ ବସେ ।
ଅଶେଷ ଶୋଭା ତହିଁକ ମନ ନ ଯାଇ
ଆକାଶ ଯେମନ୍ତେ ଦୃଷ୍ଟିଦୃଷ୍ଟି ନ ପାଇ । ୧୭ ।
ଏ ସମୟେ ରସେ ନବ ଚୂମ୍ବନ୍ତ ଚନ୍ଦ୍ର
ଉଦୟସୃଷ୍ଟିରେ ଉଦୟେ ଗ୍ରହ ନରେନ୍ଦ୍ର ।
ମାନବେ ମାନସ ସ୍ନାନ କଥାରେ ଦେଇ
ସ୍ନାନ କରି ଆସନ୍ତି ଯେ ସମ୍ଭ୍ରମ ହୋଇ ।
ଦେଖନ୍ତି ସ୍ନାନ ମଣ୍ଡପେ ନୀଳାଦ୍ରିଚନ୍ଦ୍ର
ଆରତ ଅଘ ବାରଣ ମତ୍ତ ପାରୀନ୍ଦ୍ର । ୧୮ ।
ଉତ୍ତର ଦିଗରେ ଅଛି ସୁବର୍ଣ୍ଣ କୂପ
ଭିନ୍ନ କୋଟି ପଞ୍ଚଶ ଲକ୍ଷ ତୀର୍ଥରୂପ ।
ଘଣ୍ଟ ମର୍ଦ୍ଦଳ ବଜାଇ ଅର୍ଦ୍ଧରାତ୍ରରେ
ତହିଁ ଜଳ ଆଣନ୍ତି ସୁବର୍ଣ୍ଣ ପାତ୍ରରେ ।

ଅଧିବାସ କରି ତାହା ଥିଅନ୍ତି ନେଇ
ନୀଳାଦ୍ରି ନିବାସ ସ୍ନାନ କରିବା ପାଇଁ । ୧୯ ।
ମନ୍ତ୍ର ବିଧାନେ ସେ ଜଳ ସ୍ନାନ କରନ୍ତି
ମାନବଙ୍କ ଗର୍ବ ଜଳସ୍ନାନ ହରନ୍ତି ।
ପୁଣି ବହଳ ଚନ୍ଦନ ଜଳ ଏଡ଼ାଇ
ନିଃସଂଶୟେ ସଂସାର ସନ୍ତାପ ବୁଡ଼ାଇ ।
ସେ କାଳରେ ପ୍ରଭୁଙ୍କର ଯେମନ୍ତ ଶୋଭା
କେ କେଉଁ ଉପମା ତହିଁ କରିବ ଲୋଭା ।
ନିର୍ମଳ ଗଗନେ ଉଦେ ଶରଦ ଘନ
ଗଙ୍ଗା ଯମୁନା ଉପରେ କରେ ଗମନ ।
ଏମନ୍ତ ବୋଲି ବୋଇଲେ କେଉଁ ବଡ଼ାଇ
କେ ଦେବ ହୃଦରୁ ଘନ ତାପ ଛଡ଼ାଇ ।
କବି ବଚନ ଶୃଙ୍ଗାର ରଖିବା ପାଇଁ
ଅଲକ୍ଷ୍ୟ କଥାରେ ଲକ୍ଷ୍ୟ କରାଇ ନେଇ । ୨୧ ।
କେ ବୋଲେ ଗ୍ରୀଷମେ ପଦ୍ମାକରକୁ ମନ୍ଥି
ବାହାର ହୋଇଲେ ଯେହ୍ନେ ଦଶଇ ହାଥୀ ।
ଏହିରୂପେ ନାନାକଥା ମାନ କହନ୍ତି
ଭବଗ୍ରାହୀ ନାଥ ତା ଭାବରେ ବହନ୍ତି ।
କନ୍ଦର୍ପ ଦର୍ପ ହରଇ ଯେଉଁ ଶୃଙ୍ଗାର
କେ ଯଶ ପାଇବ ତହିଁ ଉପମା କରି ।
ସ୍ନାନ ସରାଇ ପ୍ରଭୁ ହୁଅନ୍ତି ପ୍ରବେଶ
ଲାଗି ହୋଇ ଝୀନ ପୀତ ପଟ୍ଟର ବାସ ।
ଶ୍ରୀଭୂଜେ ଗର୍ଭିଛି ହବ୍ୟ ଜାଳମ୍ଭା ନେଇ

* ଜଗମୋହନ

ପରିହ୍ଣ ପଚନ୍ନ ମୋହଇ ଜଗତ ।
ଫୁଲମାନ ଚୂଳ କରପଦ ଅଳକା
ସୁହିଲେ ଛଡ଼ଇ ଭବ ବନ୍ଧନ ଦକା ।
ଏହିରୂପେ ଭାଇ ବଳଭଦ୍ରଙ୍କ ବେଶ
ଫୁଲମାଳ ମାନଙ୍କେ ଶ୍ରୀଅଙ୍ଗ ଅଦୃଶ୍ୟ ।
ବେନି ପାରୁଶରେ ଶୀତ ଛତ୍ର ଉଡନ୍ତି
ଅନେକ ଖଦ ଚାମର ପଙ୍ଖା ପଡ଼ନ୍ତି ।
କହି ନୁହଇ ସେ କାଳ ଶୋଭା ସପନ୍ତ
ମହାଭଡ଼ ଗହଳେ ଲୋକ ଯନ୍ତାଯନ୍ତି ।
ଗୀତ ବାଦ୍ୟ ନୃତ୍ୟ ଜୟଜୟ ଶବଦ
ବ୍ରହ୍ମବେତ୍ତା ମାନଙ୍କର ନିଗମ ନାଦ ।
ଭାଟଙ୍କର କଏବାର ସାଧୁ କୀର୍ତ୍ତନ
ଏକ ହୋଇ ସବୁଧ୍ୱନି ପୂରେ ଗଗନ ।
କେ ଚନ୍ଦନ ଜଳମାନ ଧରି ବସନେ
ଧର ଧର ବୋଲି ଦିଅନ୍ତି ଯଜମାନେ । ୨୫ ।
ମଣୋହି ବଢ଼ାଇ ପ୍ରଭୁ ଜଗଦୀଶର
ବାହୁଡ଼ା ବିଜୟେ କରିବାକୁ ବିଶ୍ୱର ।
ବଳଦେବ ଠାକୁରଙ୍କୁ ଆଗରେ କରି
ପଛ ପଟୁଆରେ ନୀଳଗିରି କେଶରୀ ।
ଦକ୍ଷିଣ ମୁରଛ ବନ୍ଦାପନା ହୁଅନ୍ତି
ଦେଖିଲା ଲୋକଙ୍କୁ ଚତୁର୍ବର୍ଗ ଦିଅନ୍ତି ।
ନୀଳାଦ୍ରି ନବରେ ପ୍ରଭୁ ପ୍ରବେଶ ହୋଇ
ଦଶ ପାଞ୍ଚ ଦିନ ଦରଶନ ନ ଦେଇ ।

ଜନ ନୟନ ଉତ୍ସବ କରିବା ପାଇଁ
ନେତ୍ର ଉତ୍ସବ ଯାତ୍ରା କରନ୍ତି ଗୋସାଇଁ ।
ତଦ ଉପରେ ଗୁଣ୍ଡିଚା ନେଥାଲଙ୍କାର
ଯେଉଁ ରଥଛଇ ମହାପର୍ବଙ୍କର ।
ଶ୍ରୀଗୁଣ୍ଡିଚା ବୋଲି ତୁଣ୍ଡେ କୀର୍ତ୍ତନ କଲେ
ସମସ୍ତ ବେଦନାମାନ ଛୁଟଇ ଭଲେ । ୧୮ ।
ରଥେ ବିଜେ କଲ ପ୍ରଭୁ ଜଗଦୀଶ୍ୱର
ସେ ଯାଇଁ ପ୍ରଭବର୍ତ୍ତିବ ଯେଉଁ ଜଳର ।
ସେ ଜଳ ସ୍ନାନରେ ଯେତେ ପୁଣ୍ୟ ହୁଅଇ
କି କରିବ ଗଙ୍ଗା ଗୟା-ସାଗର ଯାଇ ।
ଶ୍ରୀଗୁଣ୍ଡିଚା ଶ୍ରୀଗୁଣ୍ଡିଚା ବୋଲି ହେ ଜନେ
ଶ୍ରୀଗୁଣ୍ଡିଚା ଦୀନକୃଷ୍ଣ ଗାୟେ ବଚନେ । ୧୯ ।

---

# ନବମ ଛାନ୍ଦ

## ଗୁଣ୍ଡିଚା ବର୍ଣ୍ଣନା

( କେଦାର ଗଉ ଝମ୍ପା )

ଏବେ କହିବି ଶୁଣ ହେ ଜନେ
ଏକ ଧ୍ୟାନରେ ଆନନ୍ଦ ମନେ
ଶ୍ରୀ ଜଗନ୍ନାଥ ଦେବରାଜଙ୍କ ଗୁଣ୍ଡିଚା କଥା ହେ ।
କର୍ଣ୍ଣ ପଥକୁ ଅମୃତମୟେ
ଅଶେଷ ପାପ କରଇ କ୍ଷୟେ
ଛଡ଼ାଇ ମହାଦୁସହ ଭବ ବନ୍ଧନ ବ୍ୟଥା ହେ ।
ନାନା ଉତ୍ସବରୁଁ ସେ ଉତ୍ସବ ସାର
ତିନ ଲୋକ ଲୋକଙ୍କ ନେତ୍ରାଳଙ୍କାର
ବରଷା ଆଗମରେ ସେ ଲୀଳା
କରନ୍ତି ଭବ ସାଗର-ଭେଳା ।
କମଳମୁଖୀ କମଳାକଣ୍ଠ ମର୍କତ ହାର ।୧।
ଯହିଁ ଆଷାଢ଼ ମାସ ପ୍ରବେଶ
ହୁଅନ୍ତେ ଘନ ଘୋଟେ ଆକାଶ
ଗିରି ମସ୍ତକ ଗିଳ କରଇ ଗମ୍ଭୀର ଘୋଷ ହେ ।
ମେଘ ପୁଷ୍ପରେ ମେଦିନୀ ବେଶ
ଉତ୍ତାପ ନାଶି କରେ ସୁବାସ
କୃଷି କାରକ ଅଙ୍ଗ ମାନସ ଭରେ ଉଲ୍ଲାସ ହେ ।
ମଣ୍ଡୁରୁଦ୍ଧ ମୂଷନ୍ତି ମଳନ ଭାବ ହେ
ମହା ଉଚ୍ଚେ ଶବ୍ଦକେ କରନ୍ତି ରବ ହେ ।

ମାନ ସରକୁ ଗମନ୍ତି ହଂସେ
ମହୀରେ ଇନ୍ଦ୍ରଗୋପ ପ୍ରକାଶେ
ମାଣିକ୍ୟ ମଣ୍ଡି ହୋଇଲା ପ୍ରାୟେ ସୁନ୍ଦର ଦଶେ ହେ । ୨ ।
ଫୁଟନ୍ତି ଗୃରୁ ଗୃମର ଫୁଲ
ଫୁଲ ବଶିଖ ଗୃମର ଭୁଲ୍ୟ
ଫୁଲ୍ଲାରବିନ୍ଦମୁଖୀ ବିରହକାଲେ ଯେ ଶଲ ହେ ।
ଯେଉଁ ଋତୁରେ ଅତ୍ୟନ୍ତ ଭଲ
ହୋଇ ବଢ଼ଇ ଦମ୍ପତୀ ବୋଲ
ଏକାକୀ ଲୋକମାନଙ୍କୁ ହୋଏ କନ୍ଦର୍ପ ଶାଲ ହେ ।
କାମୀ କାମିନୀ ଯହିଁ ହେଲେ ଅଭେଟ
ଭୋଗ କରନ୍ତି କାମ କୃପାଣ ଚୋଟ ହେ
ଦିନେ ଅନ୍ଧାର ହୋଏ ସପଟ
ପଥିକ ଜନେ ପଡ଼େ ସଙ୍କଟ
ଆରତ ହୋଇ ବୋଲନ୍ତି ରଖ ଚନ୍ଦ୍ରମୁକୁଟ ହେ । ୩ ।
ଅତି ବିକଟ ଡାହୁକ ରଟ
ଯେଉଁ କାଳରେ ହୋଏ ଉତ୍କଟ
କେକୀ କେକିନୀ ମଣ୍ଡଳୀମଧ୍ୟେ କରନ୍ତି ନାଟ ହେ ।
ଅବାଟ ବାଟ ହୋଏ ଅବାଟ
ହୋଏ ଅଗମ୍ୟ ହୋଇ କୃପୀଟ
ତଟିନୀ ଜଳ ପ୍ରବଳ ହୋଇ ବଳନ୍ତି ତଟ ହେ ।
ନାବ ଯେନା ନାବିକେ ଜଗଇ ଉଠ ନିଧେ
ପଥିକଙ୍କ ଗମନ ହୁଅଇ ମଠ ହେ ।
ସବୁ ଅଭିତରେ କମଲମୟେ
ପଦ୍ମକୁମୁଦ ଅଦୃଶ୍ୟ ହୋୟେ
ଥଳକମଳ କମଳପନ୍ତି ଫୁଟଇ ପଡ଼ଇ । ୪ ।

ପ୍ରଭ କେଦାରେ କନ୍ଦର୍ପ-ଭୂର
ପ୍ରାପ୍ତ ଶୃଭର ଷଡ଼ଜ ସ୍ୱର
ଋଷଭ ଧଇବତ ମଧ୍ୟମ ପେନ୍ନ ସେ ଘୋର ହେ ।

ଶୁଣି ପଥିକେ ଭଙ୍ଗେ ଥର୍ଥର
ଆସନ୍ତୁ ଯେ ଯାହାର ମନ୍ଦର
ପଶନ୍ତି ପ୍ରିୟା କଣ୍ଠକ କୁଚ ଗିରି କନ୍ଦର ହେ ।

ଯହିଁ ବୃକ୍ଷଲତା ନୋହେ ଅନ୍ତର ହେ
ପକ୍ଷୀ ଜୀବମାନେ କରନ୍ତି ଘର ହେ

ମକରନ୍ଦକ ବର୍ଦ୍ଧନ ପୁର
ଭୋଗ କରନ୍ତି ଉନ୍ମତ୍ତମନର
ବିଧାତା ଛଡ଼ା ଲୋକଙ୍କ ଯହିଁ ରେଖା ଗୃର । ୫ ।

ମଲ୍ଲୀ ମାଳତୀ ଜାଈ କଦଳୀ
କୁଟଜ ଅବ୍ଦ କଦମ୍ବ କେଳ
କରନ୍ତି ଯହିଁ ସମସ୍ତେ ଭୃଙ୍ଗ କଦମ୍ବେ ମେଳ ହେ ।

ସୀମାଅଧର ଦାସକୁ ବଳ
ଫୁଟଇ ଯହିଁ ଗଙ୍ଗଶିଉଳୀ
ଯହିଁ ଅନଙ୍ଗବିରହୀ ଅଙ୍ଗ ଦହଇ ଜାଳ ହେ ।

ଏହି ପ୍ରକାରେ କେତେ କହିବ ଭାଳ ହେ
ପ୍ରସଙ୍ଗକୁ ସେ ଏବେ ବୋଇଲି ଛଳ ହେ ।
ପ୍ରଧାନରସ ଯିବାକୁ ଭଳ
ରଖିଲି ରଘୁବନ୍ଦନା ବଳ
ଏଣୁକରି ସେ ସମସ୍ତ ଲୋକ ସୁଖ ସଞ୍ଚାଳହେ । ୬ ।

ଏମନ୍ତ ଯେଉଁ ଅଷାଢ଼ ମାସ
ଶୁକ୍ଳ ଦ୍ୱିତୀୟା ତିଥି ଦିବସ
ପୁଷ୍ୟାନକ୍ଷତ୍ର ସହିତେ ହୋଇଥାଇ ପ୍ରବେଶ ହେ ।

ସେହି କାଳରେ ଦେବ ନରେନ୍ଦ୍ର
ମହା-କରୁଣାକର ପାଷନ୍ତ
ଅରତ ଅଘଅନ୍ଧାର ଚନ୍ଦ୍ର ସଙ୍ଗେ ପ୍ରକାଶ ହେ ।

ପ୍ରାତ ମଣୋହି ସାଂଗ ବାହାର ହୋଇ ହେ
ବୀର ବେଶରେ ବୀଗଛତ୍ରୀ ଧରିଇ ହେ
ବାଜଇ ବୀରବାଦ୍ୟ ଅନେକ
ଘଣ୍ଟମର୍ଦ୍ଦଳ ମେଘା ଝମଂକ
ଜନପୁରେ ଚମକ ଦମକ ଦର୍ଶନ ପାଇଁ ହେ । ୨ ।

ଶଙ୍ଖ ମହୁରୀ ବୀର କାହାଳୀ
ଜୟ ଜୟ ଏକେ ହୁଳହୁଳି
ମଙ୍ଗଳ ପାଠ ମଙ୍ଗଳ ଗୀତ ନୂପୁର କଳ ହେ ।

ମଣିମା ଡାକ ଅନେକ ପଡ଼େ
ଅନେକ ବର୍ଣ୍ଣ ପତାକା ଉଡ଼େ
ଷଦ ଭ୍ରମର ଚଳେ ସମୁଦ୍ର ବଳ ହେ ।

ଅମ୍ବରତେ ଅଗରୁ ଧୂପହି ବାସେ
ଆକାଶରୁ ସୁବାସ ପୁଷ୍ପ ବରଷେ
ଅର୍ଦ୍ଧ ଆକାଶେ ଅମରେ ରହି
ଅତି ପୁଲକ ଆନନ୍ଦେ ଚାହିଁ
ଲହସୀ ସ୍ତୁତ କରନ୍ତି ଭକ୍ତି ଭାବେ ସନ୍ତୋଷେ । ୩ ।

ଏମନ୍ତେ ବିଜେ କରନ୍ତି ସ୍ଥିରେ
ଶ୍ରୀଭୁଜ ଦେଇ ଭକ୍ତଙ୍କ କରେ
ଅଲପ ହସି ବେନି ପାଶକୁ ଢଳ ଚାହାନ୍ତି ସେ ।
ଅମୃତ ଦୃଷ୍ଟି ପଡ଼ନ୍ତି ମାତ୍ରେ
ଉତ୍ତମାଧମ ମଧ୍ୟମ ପାତ୍ରେ
ଧର୍ମାର୍ଥ କାମ ମୋକ୍ଷ ଚତୁର ବର୍ଗ ପାଆନ୍ତି ।
କୃପାକର କରୁଣା କର ବିସ୍ତାର
କେତେ ଲୋକଙ୍କୁ କେତେ କର ନିସ୍ତାର ସେ ।
ବଳଦେବଙ୍କୁ ଆଗରେ କରି
ସିନ୍ଧୁଶ୍ରୀ ଗନ୍ତା ପାଶକୁ ଧରି
ନୀଳାଦ୍ରୀ ନବରରୁ ବାହାର ଜଗଦୀଶ୍ୱର । ୯ ।
ସ୍ନେହ ଭାବରୁ ସୁଭଦ୍ରା ସଙ୍ଗେ
ସୁଦରଶନ ବିଜୟେ ରଙ୍ଗେ
ମଦନ ଗୋପାଳଙ୍କୁ ସେ ଯେନି ବିଜୟେ ରଥେ ହେ ।
ସେ କାଳେ ଯେଉଁ ଶୋଭା ସମ୍ଭବେ
କାହାର କଥନୀୟ ନୁହନ୍ତି
ସେହି ଜାଣନ୍ତି ଯେ ଦେଖିଛନ୍ତି ନୟନ ପଥେ
କେ କହିବ ସେ ରଥ ମଣ୍ଡଣୀ ଶୋଭା ହେ
ଝଲ ଝଲ ଝଲକ ଦର୍ପଣ ପ୍ରଭା ହେ
ଚାରୁ ଦିଗରୁ ନିଶୁଣି ପଟା
ପାଟ ପତଙ୍କା ନେତ ପ୍ରକଟା
ଚାରୁ ଚାମର ଫୁଲମାଳରେ ନୟନ ଲୋଭା ହେ । ୧୦ ।

ସୁବର୍ଣ୍ଣ ଘଣ୍ଟି ଘାଘୃଣ୍ଡ ମାଳ
ବିବିଧ ମଣି ଗଣ୍ଡେ ମଣ୍ଡଳ
ରତ୍ନ କଳସ ଉପରେ ସୂର୍ଯ୍ୟ ସମାନ ଚକ୍ର ହେ ।
ନଟ ନାଗର ହସ୍ତକ ହାଥ
ପ୍ରାପ୍ୟେ ବିବିଧ ଗଢନ୍ତି ସାର୍ଥ
ଶଙ୍ଖ ଗଞ୍ଜନ ନାମରୁ ନାନା ପ୍ରକାରେ ବନ୍ଧ ହେ ।

ଯେଉଁ ରଥରେ ବିଜେ ଦେବାଧିଦେବ ହେ
ତହିଁ ଶୋଭା କେ ବଚନରେ କହିବ ହେ
ଦଶ ଚତୁର ଲୋକେ ଉପମା
ନାହିଁ ତହିଁକ ସେ ସୁଖସୀମା
ନୋହିଲେ କିପାଁ ତ୍ରୈଲୋକ୍ୟ ମୋହନକୁ ବହିବ ହେ ।୧୧।

ଧନ୍ୟ ସେ ରଥ ଧନ୍ୟ ସେ ପଥ
ଯହିଁ ବିଜୟେ ଶ୍ରୀ ଜଗନ୍ନାଥ
ଧନ୍ୟ ଜନଙ୍କ ନୟନ ଧନ୍ୟ ଗୁଣ୍ଡିଚ୍ଚ ଠେକ ହେ ।
ଯହିଁକି ନାନା ଦେଶରୁ ଲୋକ
ଅସଂଖ୍ୟ ହୋଇ ମହା ଉତ୍ସୁକ
ଅନୁବରତେ ଉଚ୍ଚରେ ହରି ମହିମା ଡାକ ହେ ।

ଅଙ୍ଗ ବଙ୍ଗ କଳିଙ୍ଗ ମଗଧ କାଶୀ ହେ
ନଟ ଭୋଟ କର୍ଣ୍ଣାଟ ଗଉଡ ଦେଶୀ ହେ
କାମ୍ୟକ କାମରୂପ ନେପାଳ
କୋଶଳ କୁରୁକ୍ଷେତ୍ର କୁନ୍ତଳ
ହିନ୍ଦୁ ମଳୟ ଶୈଳ ପଞ୍ଚାଳ ସିଂହଳ ବାସୀ ହେ । ୧୨ ।

ସୌରାଷ୍ଟ୍ର ମହାରାଷ୍ଟ୍ର ଅବନ୍ତୀ
ଆଦି ଅନେକ ଦେଶୁ ଆସନ୍ତି
ବିବିଧ ଯାନମାନ ଆରୋହୀ କେ ପାଦ ଗତି ହେ ।

କେତେ ନୃପତି କେତେ ସଞ୍ଚାରି
ଯେନ ଆସନ୍ତେ ନ ପାନ୍ତି ସ୍ଥିତି
ନଦୀ ସମୁଦ୍ରେ ପଶିଲା ପ୍ରାୟେ ଯେତେ ପଶନ୍ତି ହେ ।

କେହି ଠାଇ ଠମାଲ ରହସ ରଙ୍ଗେ ହେ
କେହି କ୍ରୀଡ଼ା କରନ୍ତି ବିବିଧ ରଙ୍ଗେ ହେ
ଯୁବା ଯୁବତୀ ଯତି ସନ୍ନ୍ୟାସୀ
ସାଧୁ ଦୁର୍ଜନ ପଣ୍ଡିତେ ମିଶି
ଚୋର ସାଧବ ଅଗୁର ଲୋକ ଚଣ୍ଡାଳ ସଙ୍ଗେ ହେ । ୧୩ ।

ଏ ରୂପେ ନାନା ମାର୍ଗେ ଆସନ୍ତେ
ଠାବେ ଠାବେ ହେ ରହନ୍ତି ରାତ୍ରେ
କେହୁଁ ଯୁବତୀ ବୋଲନ୍ତି କାନ୍ତେ କଷ୍ଟେ ଗୃହଁ ହେ ।

ଯିବାକୁ ମୋର ଶକତି ନାହିଁ
ଆଗରେ ଦଣ୍ଡେ ଯିବାକୁ ରହୁ
ଶୁଣି ନାୟକ ବୋଲଇ ହେଉ ଜୀବନସହୁ ରେ ।

କେହୁଁ ଯୁବତୀ ଅତି ନିତମ୍ବିନୀ
କାନ୍ତକର ଧରି ସଖୀରେ କରନ୍ତି ଗତି ହେ ।

ବୋଲଇ କେତେ ଦୂରରେ କ୍ଷେତ୍ର
କାହିଁ ହେ ବେନି କମଳ ନେତ୍ର
ଦେଖାଇ ଅଛି ବୋଲନ୍ତେ ହୋଏ ହରଷ ମତି ହେ । ୧୪ ।

ସପ୍ରେମ ଭରେ କାନ୍ତଙ୍କୁ ସ୍ପର୍ଶି
କଉଁ ସୁନ୍ଦରୀ ବୋଲଇ ରହି
ଗ୍ଲବାକୁ ତ ଚରଣ ମୋର ଚଳଇ ନାହିଁ ହେ ।

ଏଠାରୁ ମୋତେ ନେବ ତ ବହି
ଶୁଣି ନାୟକ ବୋଲଇ କେହି
ନ ନେଲେ କଉଁ ଚଳି ଏ କଥା କମଳମୁହିଁରେ ।

ଶ୍ରମଭରରୁ ଇଷି କେ ଭାଷି
ନାସା ତୋଳ ପାଦ ତଳରେ ବସି
ଝଲକ ଚନ୍ଦ୍ର ମୁଖ ହସାଇ
ହସି କାନ୍ତଙ୍କୁ କହେ ଗୋଲାଇ
ମହାପ୍ରଭୁଙ୍କ ଯାହାଫଳହିଁ ହଟିଲା ଅଛି ହେ । ୧୫ ।

ଶୁଣି ଦୟିତ ବୋଲେ ଏ ସତ୍ୟ
କହିଲ ଯଉଁ କଥା ଉଚିତ
କ୍ଳେଶ ନୋହିଲେ କ୍ଳେଶ ନୁହଇ ଫଳ ପାଇବା ଗୋ

ସୁମନା ହୋଇ ଦମନା ହେଲେ
ଅସୁନ୍ଦରହିଁ ଦଣ୍ଡଇ ଭଲେ
ତୁମ୍ଭେ ବିବେକୀ ତହିଁ ଅଧିକ କେତେ କହିବା ଗୋ

ଏହା ଶୁଣି ହସିଲା ହରିଣଦୃଶା
ହାଥେ ହାଥ ମାରି କଲା ପ୍ରଶଂସା ସେ
ପୁରୁଷୋତ୍ତମ କଥାକୁ ଛଳ
କହିଥିଲତ ପଡ଼ିଲା ବଳ
ନୋହିଲେ ମୋର ତୁମ୍ଭକୁ ହେଲା ଏହି ସମସ୍ୟା ହେ ।୧୬।

ପ୍ରେମ ଛଳରେ ଯେଉଁ ବଚନ
ନ କହି କହିଲେ ହେ ମିଥୁନ
ବସ୍ତୁର ବୁଝି ଭାବିଲେ ଏ କଥାହିଁ ସେ କଥା ହେ
ତାହା କେତେ ହେ କହିବ ବସି
ଯେ କାମ ସିନ୍ଧୁ ଲହରୀ ରାଶି
କହି ବଦିଲେ ସହଯେ ସେ ତ ହୋଇବ ପୋଥୀ ହେ ।
କଉଁ ଯୁବତୀ ଧରି କାନ୍ତ ପଣତ
ମନେ ଘେନ ସେ ଏହି କଥା ସନ୍ତତ ହେ
ଏଡ଼େ ଗୁଣ୍ଠିଗୁ ଯାହେ ଅତ୍ୟନ୍ତ
ପ୍ରିୟ ବାଦନୀ ପୁଗୁଣବନ୍ତ
ପ୍ରିୟାଙ୍କୁ ଛାଡ଼ି ବଜେ କରନ୍ତି କମଳାକାନ୍ତ ହେ । ୧୭ ।

କଉଁ ନାଗରୀ ମଦନ ମତ୍ତେ
ନାଗର ଅଙ୍ଗେ କହେ ଉଦ୍ବନ୍ତେ
ଯେମନ୍ତ ହୋଇ ଅଛଲ ବନ ଭ୍ରମର ସୁଖେ ହେ
ଅଳି ବିବରେ ରହିଲେ ଏକା
ପାଅନ୍ତି ହିନା ଅନେକ ଦଣ୍ଡା
ଭ୍ରମ ସକାଶୁଁ ମୁହିଁ ମରନ୍ତି ସନ୍ତାପ ଦୁଃଖେ ହେ ।
ଯାହା କାଳେ ନାଗଙ୍କୁ ଛାଡ଼ିଲେ ନାହା
ଅଉ ଅଛୁ ତ କେହି ହେବାକୁ ସାହା
ଅଗବେଳେ ତ ହୃଦ ଭ୍ରମର
ହୋଇ ନଥିଲ ଏଡ଼େ ନିଷ୍ଠୁର
ଏବେ ହେ ଦେବରାଜଙ୍କଠାରୁ ଶିଖିଲ ଏହା ହେ । ୧୮ ।

ନଗ ଢନ୍ନର ଗନ୍ଧର୍ବ-ସତ୍ତ୍ୱା
ଅଦ ଢବଧ ଜାଢ ବନ୍ନତା
ଦ୍ୱାବ ଭ୍ରବାଦ ଢବଧ ଅଲଙ୍କାର ଦେଖାଇ ଦେ ।

ଅସନ୍ତ୍ରେ ସୁଖେ ସ୍ନେହ ବରଭୁ
ପଞ୍ଚବିଶିଖ ପଞ୍ଚଶରଭୁ
କାର୍ମ୍ମୁକ ପଞ୍ଚଜନମାନଙ୍କୁ ଅଙ୍ଗେ ରଖାଇ ଦେ ।

ଜଗବନ୍ଧୁ ଦର୍ଶନେ ସବୁ ଛାଡ଼ନ୍ତି ସେ
ପରମାନନ୍ଦ ସୁଖ ଭ୍ରବେ ଭଜନ୍ତି ସେ
ଜୟ ଜୟ ଶ୍ରୀ ଜଗତ ନାଥ
ଜୟ ଜୟ ଶ୍ରୀ ଲାଙ୍ଗଲ ହସ୍ତ
ଜୟ ସୁଭଦ୍ରା ବୋଲି ମସ୍ତକେ କର ଯୋଡ଼ନ୍ତି । ୧୯ ।

ଜୟ କମଳପତ୍ରଲୋଚନ
ଜୟ କଳୁଷ କଷ୍ଟ ମୋଚନ
ଜୟ କମଳାମୁଖକମଳ ମତ୍ତ ଭ୍ରମର ଦେ
କମ୍ବୁ କଣ୍ଠକ ନାଗର ବର
କୃପା ସମୁଦ୍ର କୈବଲ୍ୟ ଜୂର
କଉସ୍ତୁଭ ଯେ କଉମୁଦ କ ରଥାଙ୍ଗ ଧର ଦେ ।

ପ୍ରଭୁ କୋଟି ବ୍ରହ୍ମାଣ୍ଡପତି ପାଳକ
ପଞ୍ଚ ଜନକ ଦ୍ୱାର ପଦ୍ମ ଧାରକ
ପଞ୍ଚ ଜନଙ୍କ ପାରଜାତକ
ପରମାନନ୍ଦ ସୁଖଦାୟକ
ଜୟ ଜୟ ଶ୍ରୀ ଗୁଣ୍ଡିଚା କଉତୁକୀ ନାୟକ । ୨୦ ।

ଏହି ପ୍ରକାରେ କେ କେତେ ସ୍ତୁତି
କରି ଦର୍ଶନ ସୁଖେ କରନ୍ତି
କଳି କଳୁଷ ସନ୍ତାପକୁ ସଘାତ କରନ୍ତି ।
କଦମ୍ବ ଫୁଲ ପ୍ରାୟକ ଅଙ୍ଗ
ହଶେ ପୁଲକ ହେବାରୁ ସଙ୍ଗ
ଝର ସମାନ ନେତ୍ରୁ ଆନନ୍ଦ ଅଶ୍ରୁ ଝରନ୍ତି ।
ଭକ୍ତି ଭାବରେ କହୁଁ ଭକ୍ତେ ଗାବନ୍ତି ହେ
ଭାବେ ଭଙ୍ଗିମା ହୋଇ କେହୁ ନାଚନ୍ତି
ଘଡ଼ ଘଟରୁ ବାହାର ହୋଇ
ଭବ ଭୟକୁ ଦୂରେ ପକାଇ
କେ ଭକ୍ତବନ୍ଧୁ କରୁଣାସିନ୍ଧୁ ଶୋଭା ଭାବନ୍ତି ହେ । ୨୧ ।

ଏହି ପ୍ରକାରେ କେ କେତେଠାରେ
ନାନା ଭାବରେ ଦର୍ଶନ କରେ
କେ ଦଣ୍ଡବତ କେ ପରିକ୍ରମା କରନ୍ତି ତହିଁ ହେ ।
କେହୁ ନ ଚଳେ ରହି ନିଶ୍ଚଳେ
ନେତ୍ର ନିବେଶି ମୁଖକମଳେ
ଅପଲକରେ ଚିତ୍ର ପ୍ରତିମା ପରାୟେ ରହି ହେ ।
ଅଛି ବଳେ କେ ପଶି ମହାଗହଳେ ହେ ।
ରଥ ଛୁଇଁ ବିଶ୍ରାମ କରନ୍ତି ଚଳେ ହେ ।
ମହାପାତକୀ ପାତକ ନାଶି
ମହା ଆନନ୍ଦ ସୁଖରେ ତୋଷି
ହୋଇ ପରମ ପଦ ପଦବୀ ପାଇଣ ଚଳେ ହେ । ୨୨ ।

କେ ନିଜ ପ୍ରାଣପ୍ରେୟସୀଙ୍କୁ ସଙ୍ଗେ
ଘେନି ଦର୍ଶନ କରନ୍ତେ ରଙ୍ଗେ
କର ନିବେଶି ଉତ୍ତମ ଅଙ୍ଗେ ବୋଲଇ କାନ୍ତ ହେ ।
କେ ବଳଭଦ୍ର କେ ଜଗନ୍ନାଥ
କେ ସୁଭଦ୍ରା ମୋତେ କହ ହେ ନାଥ
କାହାର କଉଁ ରଥ କେ କହୁଁ ଚଢ଼ି ବହନ୍ତି ହେ ।
ଏହା ଶୁଣି ନାୟକ ବୋଲଇ ସଖି ରେ
ଏହୁ ସକଳେ ଶୁହାଁ ଶୁହାଁ ସୁମୁଖି ରେ
ଅଛି ବିପୁଳ ପ୍ରଲମ୍ବ ହାଥ
ଦେବରାଜ ଏ ଶ୍ରୀଜଗନ୍ନାଥ
ଫୁଟିଲା ପଦ୍ମପ୍ରାୟ ବିସ୍ତାର ଯାହାର ଅକ୍ଷି ରେ । ୨୩ ।
ମର୍କତମଣି-ଦର୍ପଣ-ଜିଣି
ଶ୍ରୀମୁଖ ଦେଖ ରମଣୀ ମଣି
ମକରାକୃତି ମଣି କୁଣ୍ଡଳ ଝଟକେ ଗଣ୍ଡେ ଗୋ
ଶିରେ ସପତ୍ର ଶାଖା ମୁକୁଟ
ହାର କେଦାର ସଙ୍ଗେ ସୁଘଟ
ବଲୋକନେ ଅଶେଷ କଷ୍ଟ ସନ୍ତାପ ଖଣ୍ଡେ ଗୋ ।
ଦେଖ ଦେଖ ସୁରଙ୍ଗ ଅଧର ଛବି ଗୋ
ଛାର କରଇ ବିମ୍ବଧୂଳି ରବି ଗୋ
ଅମୂଲ୍ୟ ରତ୍ନପଦକମାଳ
ବିରାଜିବାରୁ ଶ୍ରୀ-ବକ୍ଷସ୍ଥଳ
ନଜର ଗ୍ଭୁରଙ୍କୁ ଲଜାନ୍ତେ ବଡ଼ କବେକ କବି ଗୋ । ୨୪ ।

ବଡ଼ ରସିକ ନାଗରବର
ନାଗର ନାରୀ ଧଇର୍ଯ୍ୟ ହର
ଶ୍ରୀ ନନ୍ଦଘୋଷରଥ ରଥୀ ଏ ରଥାଙ୍ଗଧର ଗୋ ।
ଏହାଙ୍କୁ ଏବେ ଦର୍ଶନ କର
ହୋଇ ଅଶେଷ ଦୁରିତ ହର
ଶୁଣି ସୁନନ୍ଦ ଶିରେ ସୁଧୀରେ ଯୋଡ଼ନ୍ତି କର ସେ ।
ପୁଣି ନେଇ ଦେଖାଇ ଶିରପାଣିଙ୍କ ସେ
ମହାପ୍ରବଳ ମତ୍ତ ସିଂହଠାଣିଙ୍କି ସେ
ଶରଦପର୍ବ ଶର୍ବରୀପତି
ଗର୍ବ ଗଞ୍ଜାଇ ଶ୍ରୀମୁଖ ଜ୍ୟୋତି
ବଳଭଦ୍ର ଏ ରେବତୀ—ପ୍ରାଣମଣିର ମଣି ଗୋ । ୧୫ ।

କୁନ୍ଦ କୁମୁଦ—ଚନ୍ଦ୍ରମା କର
ଚନ୍ଦ୍ରମାକର କମ୍ବୁ ଗୋକ୍ଷୀର
ହାର ତୁଷାର ହଣ୍ଡୀର ଛବି କରେ ଶ୍ରୀଅଙ୍ଗ ଗୋ ।
ବରୁଣସୁତା ପ୍ରିୟ ଏ ଯନ୍ତୁଁ
ଅରୁଣନେତ୍ର ଅରୁଣ ତନ୍ତୁଁ
ଅରୁଣ ମହା ଅରୁଣ ପଦ୍ମପ୍ରାୟ ସୁରଙ୍ଗ ଗୋ ।
ଶିରେ ସପତ ଫଣିମଣି ବିରାଜେ ଗୋ
ଶିବ ବ୍ରହ୍ମା ସହିତେ ଏହାଙ୍କୁ ଭଜେ ଗୋ
ଅନନ୍ତ ଏହାଙ୍କର ମହିମା
ଅଶେଷ କୋଟି ବ୍ରହ୍ମାଣ୍ଡ ସୀମା
ନ କର ଅକଳନା ବହନ୍ତି ଆପଣା ଭେଜେ ଗୋ । ୧୬ ।

ଦେଖ ସୁଭଦ୍ରା ଭଦ୍ରଦାୟିନୀ
ଭୃତ୍ୟବତ୍ସଳା ଭୟଭଞ୍ଜନୀ
ହସିଲା ହେମ ଶତପତ୍ରଙ୍କୁ ହସେ ଶ୍ରୀମୁଖ ଗୋ ।

ଅବଲୋକନ କରିବା ମାନେ
ଅଶେଷ ଦୁଃଖ ନ ରହେ ଗାନେ
ପରମାନନ୍ଦ ସେହି ବିଚାରରୁ ପରମ ସୁଖ ଗୋ ।
କର କର ଦର୍ଶନ ସୁଦରଶନ ଗୋ
କୋଟି କୋଟି ତପନ କରେ ଶୋଭନ ଗୋ ।
ଏମନ୍ତ ଯହିଁ ଅନୁରାଗେ
ଆନନ୍ଦ ଅଶ୍ରୁ ପୁଲକ ଯୋଗେ
ବୋଲେ ଶ୍ରୀ ନନ୍ଦୀଘୋଷ ଏ ଯହିଁ ଗରୁଡ଼ ଚିହ୍ନ ଗୋ ।।

ତାଳଧ୍ୱଜରେ ବଡ଼ଠାକୁରେ
ଦେବୀ ବିଜୟେ ପଦ୍ମ ଅଙ୍କରେ
ପତିତଜନମାନଙ୍କୁ ଉଦ୍ଧାରିବା କୃପାରେ ସେ ।
ପାରିଜାତକ କୁସୁମ ତିରେ
ବରଷି ସ୍ତୁତି କରନ୍ତି ସୁରେ
ଏହି ସମୟେ ଜଣାଇ ଦୀନକୃଷ୍ଣ ଛାମୁରେ ହେ
ଆହେ ଅଘଭଞ୍ଜନ କମଳାନାଥ ହେ

କୃପାସମୁଦ୍ର ଦୀନଜନଙ୍କ ସାହା
ବହିଥିଲେ ମୁଁ ତୁମ୍ଭ ଶରଣ
ରଖ ପ୍ରଭୁ ତାହା ସୁଜାଣ
ଜଣାଉଛି ଅଭାବ ସେ ମୋତେ କରିବେ ଅଦ୍ଧା ହେ ।।

ଅଜାତପତ୍ର ପକ୍ଷବ ରଥ
ପୋତ ପଶ୍ୱସ୍ୟ କୃତ ବ୍ୟର୍ଥ
ନବୀନ ପୋତ ପଶ୍ୱସ୍ୟ ପ୍ରଭୁ ନାହିଁ ମୋ ଗଛ ହେ
କେବଳ ଏହୁ ଅଭିମାନହିଁ
ମନେ ଧେନନ୍ତୁ ହେ ଭାବଗ୍ରାହୀ
ତୁମ୍ଭେ କରୁଣା ବରୁଣାଳୟ ଅଗତି ଗତି ହେ ।
ଆଶା ବିଶ୍ୱାସ ନାମୁଁ ଯେତେ ଭରସା ହେ
ତାହା କହିବି କେତେ କେତେ ମୋ ଭାଷା
ଅନ୍ତରଯାମୀ ପ୍ରଭୁ ତ ଜାଗ
ଜାଗିବେ ବାଞ୍ଛା ଯେହ୍ନେ ଏତେକ
ଘଣୟ ଏବେ ଏ ରଥଯାତ୍ରା ଉତ୍ସବ ହେଉ ସୁଦଶା ହେ ॥

ଅହେ ବାରଣ ଜୟ ବାରଣ
ବାରେ ହେ ମୋତେ କର କାରଣ
ଅଧମ ଉଦ୍ଧାରଣ ପ୍ରଭୁ ଭଗତ ବତ୍ସଲ ହେ
ବରୁଣ ସୁତା ହୃଦଭୂଷଣ
ଅରୁଣ-ପ୍ରଭା ଛବି ଦୂଷଣ
ତରୁଣ କାଳ ଲୀଳାଖେଳା ସୁନ୍ଦର ଅଖିଳ ହେ
ପ୍ରଭୁ ନାହିଁ ମୋହର କହୁହିଁ ଦୃଢ଼
ବିଶ୍ୱରେଲେ ମୁଁ ସବୁ ପ୍ରକାରେ ମୂଢ଼
ମହା ଘୋର ଏ ସଂସାର ସିନ୍ଧୁ
ଏଥୁ ଉଦ୍ଧାର ହେ ଦୀନବନ୍ଧୁ
ଉପେନ୍ଦ୍ର ଇନ୍ଦୁବଦନ ଯେ ନନ୍ଦଘୋଷ ଅରୂଢ଼ ହେ । ୩୦ ।

# ଦଶମ ଛାନ୍ଦ

## ଗୁଣ୍ଡିଚ୍ ବର୍ଣ୍ଣନା

( ରାଗ ବଙ୍ଗଳାଶ୍ରୀ )

ଏଥୁ ଅନ୍ତେ ଜଗନ୍ନାଥ ଦେବରାଜ ରଥଗଜ ଅଶ୍ୱନର ।
ଅଷ୍ଟ ସମ୍ଭ୍ରମରେ ଆନନ୍ଦ ଭର ହୋଇଲେ ସର୍ବ ଅଭସାର । ୧ ।

ଆଗେ ଜଗନ୍ନାଥ ପଛେ ବଳଭଦ୍ର ଯାନ୍ତି ମଧ୍ୟରେ ଦେବୀ
ଶ୍ୱେତ ଚାମର ଆଲଟ ପଂଖା ଧରି ପାଶେ ଲୋକେ ଛନ୍ତି ସେବି । ୨ ।

ଘଣ୍ଟ ମର୍ଦ୍ଦଳ ମହୁରୀ ଶଙ୍ଖଭେରୀ ଦୋସରୀ କାହାଳୀ ବାଜେ
ଦରିଦ୍ର ପଣ୍ଡିତ ଗଣ ତାରିବାକୁ ନୀଳଗିରି ନାଥ ବିଜେ । ୩ ।

ମଣିମା ମଣିମା ଡାକ କି ପୁଷ୍ପିର ଗୋମୁଖ ଘଣ୍ଟ ଅପ୍ରମେୟେ
ଜୟ ଜୟ ଗୋଳ ଅଛନ୍ତି ପ୍ରବଳ ସମୁଦ୍ର ମନ୍ଥନ ପ୍ରାୟେ । ୪ ।

ଅଗରୁ ଧୂପ ଅନୁବ୍ରତେ ପ୍ରକଟ ହୁଅଇ କୁସୁମ ବୃଷ୍ଟି
ଆଗେ ଅପସରୀ ନୃତ୍ୟ ଗୀତ କରି ପ୍ରକାଶନ୍ତି ସୁଖ ସୃଷ୍ଟି । ୫ ।

ଚନ୍ଦ୍ରବଦନୀ ଗଜଇନ୍ଦ୍ରଗମନୀ ଶିଶୁପାଶ୍ୱନ୍ତ୍ରମଧମା
ମନ୍ଦହାସିନୀ ମତ୍ତପିକଭାଷିଣୀ ସୁକୁନ୍ଦଦଶନୀ ରାମା । ୬ ।

ନୀଳକୁଟିଳ କୁନ୍ତଳେ କମନୀୟେ ଭିଡ଼ିଛି ଲୋଟଣୀ ଜୁଡ଼ା
ଗଭ୍ମୂଳେ ଖୋସି କେତକୀ ପାଖୁଡ଼ା କରିଅଛି ଘରଚୂଡ଼ା । ୭ ।

ବାହାବେଣୀ କାମ ଗୁପତି ଚଳଚଳି ପାଉଅଛି ଦିବ୍ୟଶୋଭା
ଝିଲିମିଲି ଚନ୍ଦ୍ରଝୁମ୍ପା ଝଲକତେ ନାଗର ନୟନ ଲୋଭା । ୮ ।

ଭ୍ରୂଭଙ୍ଗିମା ନୟନ ତରଙ୍ଗିମା କରି ହସ୍ତକ ଦେଖାନ୍ତି
ତାଳ ମାନ ଭ୍ରାନ୍ତେ ହୃଦୟ ସଙ୍ଗତେ ସୁଖ ସମ୍ପଦ ରଖନ୍ତି । ୯ ।

ରସବନ୍ତୀ ଗୁଣବନ୍ତୀ ଭାବବନ୍ତୀ ନିତମ୍ବବନ୍ତୀ ମଣ୍ଡଳୀ
ନାନାରଙ୍ଗରେ ନାନାରଙ୍ଗ କରନ୍ତି ଝୁଲ ଅଙ୍ଗମାନ ଟଳ । ୧୦ ।

ବଡ଼ କବ-ଟା ଜଡ଼ିତାକୁ ପାଇବେ ମୁଁ କେତେ କହିବ ତାହା
ଊର୍ଦ୍ଧ୍ୱରେଖା ମାନେ ଅଧରେଖା ହେବେ ଅନାଇଁମା ମାତ୍ରେ ଯାହା ॥

କାମ କରବାଳ - ଧାତର ପ୍ରବଳ ଅଳପଦ୍ମସ କଟାକ୍ଷ
କେ ସହନ୍ତା ଯେବେ ନ ଥାନ୍ତା ପ୍ରଭୁଙ୍କ ଦରଶନ ସେନା ପକ୍ଷ ॥

ନଗ୍ରନାରୀ ମାନେ ବାହାର ହୋଇଲେ ଦର୍ଶନ କରିବା ଆଶେ
ଅବଧ ବନ୍ଧ ରୋପଣ କ୍ଷେପଣ ନାନା ଅଳଙ୍କାର ବେଶେ । ୧୩ ।

ସିତ ପୀତ ନୀଳ ଲୋହିତ ବସନ ପରିଧାନ କରି ଅଙ୍ଗେ
ପନ୍ତ ପନ୍ତ ହୋଇ ଗମନ୍ତ ସୁନ୍ଦରୀ ସୁତ ପତି ଯେନ ସଙ୍ଗେ । ୧୪ ।

ଏମନ୍ତ ପଥରେ ରଥରେ ଦେଖନ୍ତି ଜଗନ୍ନାଥ ଦେବରାଜ
ଆନନ୍ଦଭରେ ନିଯୁଛନ୍ତି କରନ୍ତି ଅଙ୍ଗ ଆଭରଣ ଲାଜ । ୧୫ ।

ନୟନ କମଳ ନୀଳୋତ୍ପଳଦାନ ମଣ୍ଡି ପ୍ରଭୁଙ୍କ ଶ୍ରୀଅଙ୍ଗେ
ଆନନ୍ଦ ଅଶ୍ରୁ ପୁଲକ ଭରେ ସ୍ତୁତି କରନ୍ତି ବିବିଧ ରଙ୍ଗେ । ୧୬ ।

ଆହେ ଅମୃତ ଦାୟୀ ସୁଖଦାୟକ ଅନନ୍ତଅଙ୍କବିହାରୀ
ଆପଣା ଉତ୍ସବ ଉଦୟ କାଳରେ ଚଞ୍ଚଳା ଅନ୍ତର କରି । ୧୭

ଅଳପ ହସି ଶିରେ କର ନିବେଶି ଜଣାଏ କେଉଁ ନାୟିକା
ଏତେ ବରଷା ସମୟେ ପ୍ରଭୁମ୍ଭାଙ୍କୁ ନିର୍ଦ୍ଦୟେ କରନ୍ତି ଏକା । ୧୮ ।

ତାହାପୁରେ ଥିବେ ଦେଉଳେ ନ ଥିବେ ଗୁହିଁଲେ ଆସନ୍ତେ କାହିଁ ।
କେ ବୋଲେ ନକଲେ ନଚଳଇ କାର୍ଯ୍ୟ ଜଗତ ପାଳଇ ଯେହୁ ॥

କେ ବୋଲେ ଯେହାଙ୍କ କୋହେତ ଅଦ୍ଭୁତ ଠାକୁରାଣୀଙ୍କର ଦୋଷ
ବାହୁପାଶେ ବନ୍ଦୀ କରିରଖିଥିଲେ ଏହାଙ୍କୁ କରନ୍ତେ ବଶ । ୨୦ ।

ସହଜେ ଦୀନବନ୍ଧୁ ନାମ ପ୍ରକାଶ ହୋଇଛନ୍ତି ତ୍ରିଲୋକରେ
ଏବେ ହେ ଅନାଥଚନ୍ଦ୍ର-ଅରବିନ୍ଦ ପ୍ରକାଶି ଅଛନ୍ତି କରେ । ୨୧ ।

ଅମୃତ ଅହାର ସବୁ ଲୋକଙ୍କର ନୟନର ଅଲଙ୍କାର
ମହାଆନନ୍ଦରେ ଘନରସରେ କମଳା କରେ ବିହାର । ୨୨ ।

ଅଶେଷସୃଷ୍ଟି ଯାକ ପ୍ରତିପାଳନ୍ତି ଅନନ୍ତ କୋଳରେ ଥାଇ
ଯହରଥପକ୍ଷି କଶ୍ୟପ ନନ୍ଦନ ଏହାଙ୍କ ରଥେ ବସଇ । ୨୩ ।

ଅତି ଅହ୍ଲାଦ କରରୁ ସଖୀହେ ଅମୃତକର ଚନ୍ଦ୍ରମା
ତାରକାମଣ୍ଡନ ତମ ବିଖଣ୍ଡନ କମଳାଙ୍କ ମୁଖସୀମା । ୨୪ ।

ସଖୀହେ ବିଧୁ ନହିଯୋଗେ ଉଦୟେ ଯେବେ ନିତ୍ୟେ ଉଦୟେ
ଅଭ୍ର ନଭ ନାଶ ହୁଅନ୍ତା ଅଶେଷ ଅଘ ଅନ୍ଧକାରଚୟେ । ୨୬ ।

ହୃଦୟ ଚନ୍ଦ୍ରିକାକୁ ତ କେ ଏମନ୍ତ କରି ହରଷ କରନ୍ତା
କର କମଳ କାହିଁକ ପାଇଁ ଅଭ୍ର ମୁଦ୍ରିତ ଦଶା ଧରନ୍ତା

ଶୋକ ରଥାଙ୍ଗ ଅଙ୍ଗ ସଙ୍ଗ ଛଡ଼ାନ୍ତି ନାହିଁରେ ପ୍ରାଣ ସଜନୀ
ଏତେକ କରିବାକୁ ହେତୁ ହୋଇଛି ଜନ୍ମ ଗୁଣ୍ଡିଚ୍ଛ ରଜନୀ । ୨୮ ।

ତନୁ ଶୀତଭାନୁ ଉଜ୍ଜ୍ୱଳ ଦ୍ରବ୍ୟେକ ସ୍ତେ ଦର୍ଶନ ବାହାରେ
ଏମନ୍ତ କହି କଲାପ ତୋଷ ହୋଏ ପୁରାଙ୍ଗନା ଯେ ଯାହାରେ । ୨୯ ।

କେ ବୋଲେ ଅଷାଢ଼ ମାସ ପରବେଶ ଜାଣି ଶ୍ୟାମ ଘନାଘନ
ଜଗତ ତାପ ଖଣ୍ଡିବାକୁ ମଣ୍ଡିଲେ ଶ୍ରୀନନ୍ଦଘୋଷ ଗଗନ । ୩୦ ।

ଅମୃତ ବୃଷ୍ଟି କରି ସୃଷ୍ଟି ଯାକ ଏ ରକ୍ଷା କରିବେ ଗୋ ସଖୀ
ସୁଖୀ ହୋଇ ନୃତ୍ୟ କରନ୍ତି ଦେଖତ ନୃତ୍ୟ କରିବାର ଶିଖୀ । ୩୧ ।

ଘନେ ବିଲସନ୍ତି ଚପଳାର କାନ୍ତି ହରଇ ଅମ୍ବର ଶୋଭା
ଦପୃଣୀ-ଭଙ୍ଗଣୀ ଚମ୍ପାମାଳ ଶ୍ରେଣୀ ଇନ୍ଦ୍ରଶରାସନ ପ୍ରଭା । ୩୨ ।

ମହା ସମ୍ବରେ ନନ୍ଦଘୋଷ ଅମ୍ବରେ ଯେଣୁ ଏ ଘନ ଘୋଟିଲା
ସ୍ତବ୍ଧ ଅଙ୍ଗେ ଦେଖ ପୁଲକ କଦମ୍ବ କଦମ୍ବ ଡେଣ୍ଡୁ ଫୁଟିଲା । ୩୩ ।

ରଙ୍ଗ ବସନୀ ଇନ୍ଦ୍ରଗୋପ ଅବନୀ ଭେଦ କରିବାକୁ ଏହି
କେବଳ ଏକା କଥା ଏମାନ ଏଥି ନ ଦେଖି ହେଲି ଗୋ ସହି ॥

ଏଡ଼େ ମେଘ କୋଳେ ଚଞ୍ଚଳା ନ ଖେଳେ ଏହି କଥା ଅଚମ୍ବିତ
କେ ବୋଲେ କ୍ଷୀରେ ଘୃତ ଥିଲା ପରାଏ ହୋଇ ଥିବେ ଅନ୍ତର୍ଗତ ॥

ଶୁଦ୍ଧରେ ସ୍ୱର ତରୁରେ ଚନ୍ଦ କର ଅଙ୍ଗରେ ଯେମନ୍ତ ଛଇ
ବନା ହେଉରେ ଏ ପ୍ରକାଶ କହନ୍ତି ଯେ ଯାହା ସ୍ଥାନରେ ଥାଇ ।୩୬।

ଚନ୍ଦ୍ରକୁ ଯାମିନୀ କାନ୍ତକୁ କାମିନୀ କାମିନୀଙ୍କ କାନ୍ତ କାନ୍ତ
ଅଙ୍ଗକୁ ଭୂଷଣ ଭୂଷଣକୁ ଅଙ୍ଗ ପରସ୍ପରେ ଏ ଶ୍ରୀବନ୍ତ । ୩୭ ।

ଏହାଙ୍କର ଅଙ୍ଗ ଯାକତ ତାହାଙ୍କର ନାମରେ ହୋଇଛି ଛଇ
ଅସ୍ତ୍ର ଅନ୍ତର୍ଗତ ହେଲେହେଁ ଯେମନ୍ତ ରସନା ଶୋଭା କରଇ । ୩୮ ।

ଆଗ ତାଙ୍କ ନାମ ଥିଲେ ଅଭିରାମ ଶୁଣଇ ଏହାଙ୍କ ନାମ
ଏହି ହେନ ଏହାଙ୍କର ସେ ମଣ୍ଡନ ଏ ତାହାଙ୍କ ସୁଖଧାମ । ୩୯ ।

ଏକ ଆରକେ ଏମନ୍ତ କହୁଁ କହୁଁ ଚଳନ୍ତି ଯେ ପଦ୍ମଅକ୍ଷି
ଚଳନ୍ତି ତହୁଁକ କଉଁ ମଣ୍ଡବଣ ହୋଇବାରୁ ଲୋକେ ସୁଖୀ । ୪୦ ।

କେ ବୋଲେ ସଖି ପ୍ରରୂପଣ ଲକ୍ଷଣ ଏହିଠାରେ ଅଛି ଦେଖ
ବେନଭାଇ ଏକାବେଳେ ଚଳୁଥିଲେ ପାଉଥାନ୍ତି ଲୋକେ ସୁଖ ।୪୧।

ଧନ୍ୟ ଧନ୍ୟ ଘନସାର ଅଙ୍ଗ ଧନ୍ୟ ବରୁଣ-ନନ୍ଦନୀପ୍ରିୟ
ଭଲା ଭଲା ଘନସାର ତନୁ ଭଲା ବରୁଣନନ୍ଦନୀପ୍ରିୟ । ୪୨ ।

ଏକ ବୋଲେ ସଖି ଏ ଯାତ ସାକ୍ଷାତ ସ୍ୱର୍ଗପୁର ପ୍ରାପ୍ୟ ଦଶେ
ଦେଖ ଚନ୍ଦରଥ ଗନ୍ଧର୍ବଗାୟକ ଗାଏ ଦେବରାଜ ପାଶେ । ୪୩ ।

ବ୍ରହ୍ମାଦି ଦେବତା ମାନେ ପଟୁଆରେ ଅଛନ୍ତି ଗୃହପାଶରେ
ସୁରଚନ୍ଦନ ବନ୍ଦନା ଭୋଗକରି ସେବା କରନ୍ତି ତୋଷରେ । ୪୪ ।

କେ ବୋଲେ ସଖି ଯାହା ପିନ୍ଧି ପ୍ରାପ୍ତେଙ୍କ ପ୍ରଭେ ଦେଉଅଛ ମୋତେ
ଅବିଶ୍ରାମ ହୋଇ ଶ୍ୟମରଲଦସ୍ତ କଦମ୍ବ ଦିଶୁଛି ମୋତେ । ୪୫ ।

ଦିବ୍ୟର ମଗର ଅଷ୍ଟ ଶିଶୁମାର ଅଛନ୍ତି ଏଥି ବନ୍ଧୁତ
କୋଳାହଳେ ମହାଗର୍ଜନ ଏହାର ମୁହୂର୍ତ୍ତେ ରହୁନାହିଁତ । ୪୬ ।

ରଥ ବୋଇତ ମାନେ ଏଥି ସଧୀରେ ଚଳନ୍ତି କେମନ୍ତ ହୋଇ
ପାଟ ପତକା ନେତ ନାନା ଅମ୍ବର ଅତୁଳ୍ୟ ଭାବକୁ ପାଇ । ୪୭ ।

ମହା ସାଧବ ପରି ଏ ମାଧବ ମହା ଶୋଭିବନ୍ତ ଦିଶେ
ମହାସମୁଦ୍ରେ ରତ୍ନବର୍ଗ ଘେନିଛ ଶ୍ୱେତଦ୍ୱୀପରୁ ଏ ଆସେ । ୪୮ ।

ଭାଇ ବଳଭଦ୍ର ସୁଭଦ୍ରା ବହୁଣୀ ଆସି ଅଛନ୍ତି ଏ ସାଙ୍ଗେ
ଅତି ମନୋହର ଅଳଙ୍କାର ଦେଖ ମଣ୍ଡି ଏ ଅଛନ୍ତି ଅଙ୍ଗେ । ୪୯ ।

ଅମୂଲ୍ୟ ଚୂନ୍ନି ଚନ୍ଦ୍ରଶିର ଗିରି ନିତମ୍ବ ପ୍ରାପ୍ତ ସୁନ୍ଦର
କାମପାଳ ରାମା କଟକରେ ଦେଖ ରାମକୃଷ୍ଣ ବ୍ୟାସସାର । ୫୦ ।

ଅରୁଣ-କମଳ କୋଳେ ଭୃଙ୍ଗ ମେଳ ପ୍ରାୟ ନୟନ ଆକୃତି
ବରୁଣନନ୍ଦନୀ ସ୍ନେହଭାବଘେନି ଏବେ ସେ ପଡ଼ୁଛି ମାଡ଼ି । ୫୧ ।

ରେବତୀକୁଚ-ଚସକାର କରରେ କଳିତ ହଳମୂଷଳ
କ୍ଷୀରସମୁଦ୍ରରେ କଲ୍ଲୋଳ ପରାୟେ ଶ୍ରୀଅଙ୍ଗେ ଅନେକ ମାଳ । ୫୨ ।

ଦନ୍ତ ବକ୍ର ଦନ୍ତ ଅନ୍ତକ ଏହୁଟି ପ୍ରାଣୀ ଦୂତ ପ୍ରସଙ୍ଗରେ
ଧର୍ମରାଜ ବହୁଣୀଙ୍କି ଆକର୍ଷଣ ଏହୁ କଲେ ଏ ଶିରେ । ୫୩ ।

ଏ ବେନି ଭାଇଙ୍କ ମହିମା ଅନନ୍ତ ଅନ୍ତକେ କରିବ ସଖୀ
ସହସ୍ରମୁଖେ ସହସ୍ରମୁଖ ଯାହା ଲେଖେ ନ ପାରିବେ ଲେଖି । ୫୪।

ଏମନ୍ତ ପ୍ରକାରେ କେ କେତେ ଭାବନ୍ତେ ବଳଦେବ ଦେବରାୟେ
ଭକ୍ତଭାବପେନ ବଳଗଣ୍ଡୀ ବାନ୍ଧୀ ନବରେ କଲେ ବିଜୟେ । ୫୫ ।

ଅମୂଲ୍ୟ ଅଙ୍ଗୁ ଅମୂଲ୍ୟ ଆଭରଣ ଉଲାଗି ହୋଇ ଭୂ-ଷିତେ
ଦୂଇ ପ୍ରହର ଧୂପକୁ ସଜଲାଗି ହୁଅନ୍ତି ଢକଡହୃଡେ । ୫୬ ।

ଫୁଲ ଯୋରେହା ଫୁଲରେ ବଡ଼ ଶୃହା ଫୁଲରେ ହୁଅନ୍ତି ସୁବେଶ
ଫାଳି ପରୁଣାରେ ଫୁଲୁଥାଇ ଭକ୍ତ ମାହର ହୃଦୟଦେଶ । ୫୭ ।

ବେଶ ବଡ଼ାଇ କର୍ପୂର ଲାଗି ହୋଇ ସ୍ନିରେଶଳେ ମଣୋହିରେ
ନାନାପ୍ରକାରେ ଶୀତଳ ଭୋଗ ନେଇ ବାତନ୍ତି ମହାସୁଆରେ । ୫୮ ।

ଖଣ୍ଡ ମଉଚର ପଣା ହୋଇଥାଇ ଖଣ୍ଡି ଖଣ୍ଡି ହୋଇ ଅଦା
ଅଙ୍କୁର ମୁଗ ମାନଙ୍କରେ ପଡ଼ ଏ ହୋଇଥାଇ ମନବନ୍ଧା ! ୫୯ ।
ରସଆଳୟ ରସାଳ ରମ୍ଭାଫଳ ସୁବର୍ଣ୍ଣିରୁ ଦଶେ ଗୋଟ୍
ଚନ୍ଦ୍ରକୁ ଉଜ୍ଜ୍ୱଳ ଚନ୍ଦ୍ରହୋଇ ମେଳ ମଣ୍ଡା କୋଟି ଅଛ ତୋଟ୍ ।୬୦।

ଗଙ୍ଗାବାଣ ପୟ ପେଠୀ ଅଭିଶୟ ପକ୍ୱ ସପୁରୀ ପଣସ
ଅନେକରୂପେ ଅମୃତ କୁଣ୍ଡହୁଏ ପଡ଼ କୃଷ୍ଣଚନ୍ଦ୍ର ରସ । ୬୧ ।

ପରସରକ ସର ଆଦ୍ୟ ଅନେକ ସୁବାସ ଜଳ ସହିତେ
ଶ୍ରୀନନ୍ଦଘୋଷରଥୀ ଭୋଗ କରନ୍ତି ମୁଁ ତାହା କହିବ କେତେ ।୬୨।

ମଣୋହିଶେଷେ ଆଚମନ ବଢାଇ ଶ୍ରୀମୁଖ ପୋଛୁ ସୁବାସେ ।
ବଡ଼ଆଲାଗିରେ ବିକେକର ଚର୍ଚ୍ଚା କରନ୍ତି ଲୋକଙ୍କ ତୋଷେ ॥

ଜଗନ୍ନାଥ ଦେବ ନୃପଛ ଜାଣନ୍ତି ପ୍ରବାସ କରିବା ସୁଖ
ଭକ୍ତବତ୍ସଳ ଯେହ୍ନୁ ପେନ ବୋଲନ୍ତି ଜାଣନ୍ତି ଲୋକଙ୍କ ଦୁଃଖ ।୬୩।

ଭାବେ ଭଜଲେ ଭାବଗ୍ରାହୀ ଏମନ୍ତ ହୁଅନ୍ତି ଭକ୍ତ ଅଧୀନ
ଦେବାକଥାରେ ସମ୍ପୂନାହିଁ ଚତୁର୍ବର୍ଗ ହି ଦଶେ ନଉନ । ୫୬ ।

ବଡ଼ଲୋକପଣେ ସେବେ ସୁରଗଣେ ସାନଲୋକ ପକ୍ଷପାତୀ
ଦୟାଶୀଳଭାବ କେ ଅବା କହିବ ଦୀନବାନ୍ଧବ ବୋଲନ୍ତି । ୬୬ ।

ଶରଣ ରକ୍ଷଣ ଅର୍ଥେ ପ୍ରହରଣ ଧରି ହୋଇ ଊର୍ଦ୍ଧ୍ୱବାହା
ଆର୍ତ୍ତଜନପାଇଁ ଅପଲକ ହୋଇ ହୋଇଥାନ୍ତି ଗୃନ୍ଦା ଗୃନ୍ଦା । ୬୭ ।

ଆଣିବନ୍ତ ପଣ ମହିମା ଏମନ୍ତ ଦୁବହିଁ କରନ୍ତି ଦାରୁ
ମହାପତିତଜନ ରକ୍ଷା କରନ୍ତି ଦୁସହ କାଳ ଦଣ୍ଡରୁ । ୬୮ ।

ଏତେବଡ଼ ପ୍ରଭୁ ଥାଉଁ ଥାଉଁ ଦୀନକୃଷ୍ଣ ଏମନ୍ତ ମୂରୁଖ
ଅତ୍ୟନ୍ତ ସଂସାର ବିଷସୂତ୍ରେ ପଡ଼ି ପାଉଥାଇ ମହାଦୁଃଖ । ୬୯ ।

ଶବର ଯେମନ୍ତ ଗଜମୋତି ଛାଡ଼ି ପକ୍ୱ ବଦରୀକି ଆଶେ
ମକ୍ଷିକା ଯଥା ସୁବାସନା ବଶରୁ ଦୁର୍ବାସନା ଦ୍ରବ୍ୟେ ବସେ । ୭୦ ।

ସେହି ଛାର ପାଇଁ ଅନାସ୍ତୃତ ହୋଇ ଦୁସହ କଥା ସହଇ
ଅସ୍ତୁତ ପାତ୍ରଙ୍କୁ ନାନା ସ୍ତୁତି କରି ଲମ୍ବ ହୋଇ ପଡ଼ଥାଇ । ୭୧ ।

ଅହେ ନନ୍ଦୀଘୋଷରଥ ମହାରଥୀ ଶ୍ରୀଗୁଣ୍ଡିଚା କଉତୁକୀ
ଦୀନକୃଷ୍ଣ ଦାସ ଦୁଃଖ ଜଣାଇବା ଶୁଣଇ କିନା ଏଥିକି । ୭୨ ।

# ଏକାଦଶ ଛାନ୍ଦ

( କାନଡ଼ା ରାଗ )

ବଳଗଣ୍ଡି ବାଟ ନବର ବିଜୟ କରନ୍ତେ ପ୍ରଭୁ ଧୀରେ ଧୀରେ
ମହାଗହଣ ଲଗାଇ ସମ୍ମୁଖରେ
ବେନ ପାଶରେ ଖାରଛତ୍ର ବିରାଜେ ବୀରବାଦ୍ୟ ବାଜେ ସ୍ୱରେ ହେ
ସୁଜନେ
ନିରନ୍ତରେ ଶୁଭେ ଜୟ ଶବଦ
ବିଷ୍ଣୁପଦେ ପୂରଇ ପ୍ରଣବନାଦ
ବୃନ୍ଦାରକବୃନ୍ଦ ବରଷନ୍ତି ଫୁଲ ବଢ଼ାଇ ପରମାନନ୍ଦ ହେ ସୁଜନେ ।୧।

ଦେଖି ସେ ବାଲ୍ୟ ସହର କର ଖେଳି ଭାବେ ସେ ଗୁଣ୍ଡିଚ୍ଛବିନୋଦ
ଜୁର କରାଇ ଶ୍ରୀମହାପ୍ରସାଦ
ରହ ରହ ହୋଇ ବଙ୍ଗେ ବେନଭାଇ ଦେଖନ୍ତି ଭକ୍ତ ପ୍ରମୋଦ ହେ
ସୁଜନେ
ଏକ ହାଥରୁ ଅନେକ ନଅନ୍ତି
ସେବା କର ଶିରେ କର ଦଅନ୍ତି
ସୁନାସୀର ଠାରୁ ଅସୁରେ ଅମୃତକୁଣ୍ଡ ବଳେ ହେ ପିଅନ୍ତି ହେ ।୨।

ଏହି ପ୍ରକାରେ କୋଲାହଳ କଇବାକୁ ଜୁର ହୋଏ ବାଟ ଯାକ
ଏହା କହିଲେ ହୋଇବ ଅନେକ
ଏକରୁଣ୍ଡ ହୋଇ ଅଛନ୍ତି ଯହିଁରେ ଏକା ବେନ ଲୋକ ଲୋକ ହେ
ସୁଜନେ
ଯେଉଁ ରୂପେ ବରଷା ଜଳଧାର
ସେହିରୂପେ ଜଗନ୍ନାଥ ଶ୍ରୀଗୁଣ୍ଡିଚ୍ଛ ଅମୃତ ସମୁଦ୍ର ପର ହେ ସୁଜନେ ।୩।

ଅଶା ବିଶ୍ରାମ ଅଶେଷ ସୁଖଧାମ ହସରସ କଉତୁକରେ

ବିଜେ କରନ୍ତେ ଗୁଣ୍ଡିଚ୍ଛନବରେ

ହୁଳା ହୁହୁଡ଼ି ଚନ୍ଦ୍ରଧାପ ଲାଗିଲା ରବି ଅସ୍ତ ସମୟରେ ହେ

ସୁଜନେ

ଏହି ସମୟେ ଭାବଗ୍ରାହୀ

ରଥ ଉପରେ ବନ୍ଦାପନା ହୋଇ

ଲକ୍ଷ୍ମୀଙ୍କ କରେ ଶ୍ରୀଭୁଜ ଭର ଦେଇଆସନ୍ତି ପ୍ରଭୁ ଓହ୍ଲାଇ ହେ । ୫ ।

ବଳଦେବ ଠାକୁରଙ୍କୁ ଆଗ କରି ପଛେ ବିଜୟେ ମହାବାହୁ

ଅଶ୍ରୁପୁଲକ ସାତ୍ତ୍ୱିକ ହୋଇ

ଚାହୁଁଥିଲା ଦୀନ ଭକ୍ତଜନ ମନ କ୍ଷଣେ ହେ ଅନ୍ତର ନୋହୁ ହେ

ସୁଜନେ

ବିଜେ କରି ସିଂହାସନ ଉପରେ

ସେନା ଉଲଗି ହୋଇଲେ ସତ୍ୱରେ

ମହା ସ୍ନାନ ସାରି ସୁବେଶ ବଢ଼ାଇ ବିଜେକଲେ ମଣୋହିରେ ହେ ॥

ଷଡ୍‌ରସ ଯୋଗ ଚଉରାଶି ଭୋଗ କରନ୍ତି ପ୍ରଭୁ ଜଗନ୍ନିତା ।

ବଚନରେ କେ କେତେ କହିବ ତା

ମହା ସୁପକାରେ ମହତ୍ତ୍ୱ ଯତ୍ନରେ କରଥାନ୍ତି ସୁବନ୍ଧତା ହେ

ସୁଜନେ

ଷିର ଖେଚଡ଼ି ଭକ୍ତ ବ୍ୟଞ୍ଜନାଦି

ସେହିମାନେ ସେ ପାଗନ୍ତି ସମ୍ପାଦ

ନୋହିଲେ ଲକ୍ଷ୍ମୀ ତାହାଙ୍କୁ ଅନୁକମ୍ପା କରନ୍ତି ପରପ୍ରସାଦୀ ହେ ।୬।

ଅତମନ ସାର ବଡର୍ଥ ଲାଗିରେ ବଳସ୍ୱେ କମଳାବକ୍ଷର
ସବୁ ସୁଖ ହୋଇଅଛୁ ସୁଲଭ
କେବଳ କୋହୁଛୁ ଚଞ୍ଚଳା ଚଞ୍ଚଳ ନେତ୍ରାନ୍ତ ଗୃହାଣି ଲାଭ ହେ
ସୁଜନେ
ଯାଇଁ ପହୁଡ଼ିଲେ ଦିବ୍ୟ ପଲଙ୍କେ
ଚନ୍ ଅଚନ୍ ଶରରେ ଚମକେ
ସ୍ତ୍ରକୃତ ସେବକେ ଯେ ଯାହା ସେବାରେ ରହିଲେ ସିଦେ ନିଶଙ୍କେ ହେ
ସୁଜନେ । ୭ ।

ସୁର ନରମାନେ ମହା ତୋଷମନେ ଶ୍ରୀଜବରୁ ବାହୁଡିଲେ
ହିଂହଦୁଆରେ କବାଟ ପଡ଼ିଲେ
ଦେବତାଙ୍କ ମେଲାଣି ହୋଇଲେ
ଦଣ୍ଡୀ ଅସୀମାନେ ଦଣ୍ଡ ଦେବା ଅଣେ ବସୁଦ୍ଧରଙ୍କୁ ଲୋଡିଲେ ହେ
ସୁଜନେ
ଠାବେ ଠାବେ ଲୋକେ ସୁଖେ ରହିଲେ
ଠାକୁରଙ୍କ ଶଜେ ଭାବ କହିଲେ
କେହୁଁ ଠାରେ ଗୀତ ନୃତ୍ୟରେ ଉନ୍ମତ୍ତ ହୋଇ ରାତ୍ର ପୁହାଇଲେ ହେ ॥

ପ୍ରାତ ସମୟେ ଦୀନବନ୍ଧୁ ପ୍ରକାଶ ଶ୍ରୀମୁଖ ପଦ୍ମ ପ୍ରକାଶଇ
ଜନ ମନ ଚକ୍ରବାକ ହସଇ
ପାପ ଅନ୍ଧାର ନାଶ ହୋଇ ଯୀବ୍ରଷିପଣ୍ଡ ଗହଣ ଲାଗଇ ହେ ସୁଜନେ ।
ନିତ୍ୟକର୍ମ କଷ୍ଟେ କଷ୍ଟେ ବଢ଼ାଇ
ମଣୋହିରେ ବଳେ କଲେ ଯାଇଁ
ବିବଦ୍ଧ ନନ୍ଦେ ଘନ ବାଦ୍ୟ ବାଜନ୍ତି କୋଲାହଳ ଉପୁଜାଇ ହେ ।୯।

ଯେତେବେଳେ ମନ ଯାହା ହୁଏ ତାହା କା ଆଗେ କହିବା କେ ଅଛୁ
ଅଛୁ ଯେ ଦେଖିଅଛୁ ହୃଦରେ ଯେମନ୍ତ
ଯେ ଯେତେ ଦେଖିଲେ ଚନ୍ଦ୍ରକର ସ୍ୱାଦୁ ଚକୋର ପକ୍ଷୀ ଜାଣିଛୁ ହେ
ସୁଜନେ
ସବୁ ହୃଦୟ ହୃଦୟ ନୁହଇ
ଏହିଠାରେ ଶୁଣ ତାହା କହଇ
ଚନ୍ଦ୍ର ଦର୍ଶନେ ଚନ୍ଦ୍ରମଣି ବାହାବେ କେଉଁ ପାଷାଣ ଦ୍ରବଇ ହେ ॥

ଠେଲି ପିଠାଇ ବନାପନା ବଢ଼ାଇ ବଳପ୍ରେ ବଜ ଅବକାଶେ
ଜନେ ଦର୍ଶନ କରନ୍ତି ହରଷେ
ବାଞ୍ଛାନିଧି ବାଞ୍ଛାମାନ ପୂର୍ଣ୍ଣକଲେ ଗୁଣ୍ଡିଚ୍ଛ ଉତ୍ସବ ରସେ ହେ
ସୁଜନେ
ବଡ଼ ଶବଲ ବଡ଼ଦାଣ୍ଡ ଯା'କ
ବକା କଣାହିଁ ଲାଗିଲ୍ଲ ଅନେକ
ବାରକାଣ୍ଡ ପ୍ରାୟ ବୈଶ୍ୟ ଆଦ ନାନା ପସରି ମୋହନ୍ତି ଲୋକ ହେ ॥

ବଚନ ଦେଖ ବନ୍ଧନ କୁଣ୍ଡଳାଦ କର୍ଣ୍ଣମଣ୍ଡନ କଣ୍ଠମଣି
ମହା କମନୀୟ ମୋଢ ବସଣୀ
କେୟୂର କଙ୍କଣ ଅଙ୍ଗୁଳ-ଭୂଷଣ ହାର ପଦକ କିଙ୍କିଣୀ ହେ
ସୁଜନେ
ଦିବ୍ୟ ଅମ୍ବରମାନଙ୍କରେ ଶୋଭା
ଦୂରୁ ଦେଖିଲେ ଜନମନ ଲୋଭା
ଦ୍ରବ୍ୟ ଦ୍ରବ୍ୟକେ ଦ୍ରବୀଭୂତ କରନ୍ତି ବସଇ ଇନ୍ଦ୍ରପ୍ରୁ ପ୍ରଭା ହେ । ୧୬ ।

ଚୂଆ ଚନ୍ଦନ କୁଙ୍କୁମ ଅଦ୍ଦ ଦେବ କୁଟ୍ଟିମରେ ଶୋଭା ଦଶନ୍ତି
ଉଚ୍ଚ ଉରଜମାନେ ବଢିଛନ୍ତି
ଧନୀ ପୁରୁଷମାନଙ୍କୁ କରଚୋଲ ବିବିଧ ରସ ଦେଖାନ୍ତି ହେ
ସୁଜନେ
ଦିବ୍ୟ ଅଞ୍ଜନ ସିନ୍ଦୂରେ ମଣ୍ଡିତ
ଫୁଲ ତାମ୍ବୂଲ ବେଶେ ଅଖଣ୍ଡିତ
କାମେ ବଶ ହୋଇଛନ୍ତି ବାଉ ଦେଇ ମୋହ ନୁଅନ୍ତି ପଣ୍ଡିତ ହେ ।

ନାଗର କୃଷ୍ଣଚନ୍ଦ୍ର ପଣ୍ଡି ଯହିଁରେ ଶଙ୍କ ହେଉଛନ୍ତି ବେଭାବେ
କେତେ କହିବ ତାହା ବଚନରେ
ଦିଶୁଛି ଅନେକ ପ୍ରକାରେ ରୁଚିର ପସରିମାନଙ୍କ ଠାରେ ହେ
ସୁଜନେ
ରଙ୍ଗ ହୋଇବ ପ୍ରଭୁଙ୍କ ପ୍ରସଙ୍ଗ
ଏହି ଯେନ ଛାଡ଼ିଲ ତହିଁ ରଙ୍ଗ
ତେବେ ପ୍ରଭୁ ଛଦହୋଇଛନ୍ତି ଅଭେଦ ଘନ ବାହୁ ଅଙ୍ଗ ସଙ୍ଗ ହେ ।୧୪

ଜଗମୋହନ ଚନ୍ଦ୍ର ଜଗମୋହିନୀ ଯୁଗପଦ ଧନ ଗଣିଲେ
ବିଷୟୀଙ୍କୁ ବିଷ କରି ଗଣିଲେ
ବେଶ ବସନ ଅଶନ ବାସଗୃହ ଅସାର କରି ଗଣିଲେ ହେ
ସୁଜନେ
ବିଧି ଅଭାବରେ ବିଧି ଅଭାବ
ବିଧିର ତା ବଚନେ କେ କହିବ
ବିଧିସରାଗୀ ବଇରାଗେ ଛାଡ଼ିଲେ ବିଧି ଶ୍ରୀଖଣ୍ଡ ଅଦଦ୍ରବ୍ୟ ହେ । ୧୫ ।

ତକାଇ କମଳା ସଖୀଙ୍କୁ କମଳା କହିଲେ ସକଳ ଚରିତ
ସଖି ଶୁଣିଲନ୍ତି କି ବିପରୀତ
ବରଷା ପ୍ରବାସୀ ହେଲେ ସୁଖଶାନ୍ତି ପ୍ରମୋଦ କରି ଜଗତ ଗୋ
ସଜନି
ଯେ ଯାହାର ହୃଅ ପରିଶୃଣ୍ଣ
ତାରେ ହେଲେ ତ ତାହାଙ୍କୁ ପଚ୍ଚର
ମହତ ବିବେକୀ ପ୍ରଭୁ ହେଲେଣି କି ସ୍ନେହେ ଅବାଧ୍ୟ ଅଚର ଗୋ ।୧୬।
* * * ରି କଳେ କସନ୍ତି
ମୋର ସବୁ ସୁଖ ଭୋଗ ଭରନ୍ତି
କି କି କରି ପୁଣି କହି ଶୁଚ୍ଚିବାଣୀ ଶୋକ ସାଗରୁ ତାରନ୍ତି ଗୋ
ସଜନି
* * * * * *
* * ପାଇଲେ ସେ ଶ୍ରୀମୁଖ ମଣ୍ଡଳ
ଦୁଃଖ ନାଶ ଯାଇ ସୁଖ ଜାତ ହୋଇ ଅନନ୍ଦ ହୋଏ ପ୍ରବଳ ଗୋ ।୧୭।
* * * * ମହିମା
କାନ୍ତା କାନ୍ତର ସବୁ ସୁଖସୀମା
ଗୁଣଗ୍ରାହୀ ଗୁଣ କଲେ ଅବିଶ୍ୱାସ ରହେ କି ପୁଣ ଗାରିମା
ସଜନି
* * * * *
* * * * *
ନାୟିକାର ସ୍ୱଗ ବେଶ୍ୱରେ ବିଅର୍ଥ ବଳତାପ୍ତିକ ଗୋ । ୧୮ ।
ଦେଖ ଦେଖ ଲତା ହେଲେ * * *

* * * * ଏହ୍ମମଛ ।

ପକ୍ଷୀ ଜାବେ ବସା ନ କର ଏ ବରଷା ମହାସୁଖରେ ବଞ୍ଚନ୍ତି ଗୋ

ସଜନ

ଦେଖ ପ୍ରଚା * * * * * * *

* * * * * * *

* * ଜଳଦ ସମୟରେ ଦଇବ ମୋତେ ଦଣ୍ଡିବ ଗୋ । ୧୯ ।

ଦେଖ ଏ ବକୂଳ ଘନରେ * * * * *

* * ଉତ୍ତମ କାନ୍ତା କାନ୍ତେ

ଜଗତ ଅଚେହ୍ନ ମହାସୁଖ ବହୁ କ୍ରୀଡ଼ା କରନ୍ତି ଏକାନ୍ତେ ଗୋ

ସଜନ

ମୋହ ପରାୟେ ଧନ ଦୁଖୀ ଯେ ନାହିଁ

କର୍ମେ ଯାହା ଅଛି ଅବଶ୍ୟ ଭୁଞ୍ଜଇ

* * ମାୟାରେ ତାହା ନ ଦେଜଇ ଗୋ ସଜନ । ୨୦ ।

ଦେଖ ଚନ୍ଦ୍ର ସୂର୍ଯ୍ୟ ବୁଲନ୍ତି ଗଗନେ * * *

* * * * * *

କାଲ ଚକ୍ର ଧାଉ କାଠାରେ ନ ପଡ଼ି କାହାକୁ ଅବା ନ ଦଣ୍ଡେ ଗୋ

ସଜନ

ଦେଖ ମହାଭୁଞ୍ଜ ଦାତା ଈଶ୍ୱର

* * * * * *

ଉବଗ ହୋଇ ଶମଶାନେ ଥାଇ ସେ ପୁଣ ବଶ କର୍ମର ଗୋ ।୨୧।

କର୍ମଠାରୁ ଫଳ ଗଙ୍ଗାଠାରୁ ଜଳ ଦଇବଠାରୁ ବଳ ନାହିଁ

କେତେ କହୁବ ଏହା ପ୍ରାଣସହି

ଯାହା ପ୍ରାଣନାଥ ଶଙ୍ଖଚକ୍ରହାଥ ସେ ହୁଏ ବିରହେ ଦହୁ ଗୋ
ସଜନି
ଏହା ବର୍ଣ୍ଣିବ ହୃଦ ହୁଏ ଯାହା
ସେହି ସିନା ଜାଣଇ ସଖୀ ତାହା
ମାନହୀନ ହୋଇ ରହି ନ ପାରଇ କେ ସହି ପାରିବ ଏହା ଗୋ ।୨୨।

ବିମଳ ଲୋଚନା ବୋଲନ୍ତି ଶୋଚନା ନ କର ଠାକୁରାଣୀ ମାଏ
ତୁମ୍ଭଠାରେ ତାଙ୍କର ମହାଭୟେ
ଏ ଶ୍ରୀମୁଖ ଚାହିଁ ଯିବୁ ବୋଲି କହି କି କରି ଚାଲନ୍ତି ପାଏ ଗୋ
ସୁନ୍ଦରି
ତୁମ୍ଭେ ହେଲତ ଜଗତ ଜନନୀ
ଯିବେ ଅବା କେମନ୍ତେ ସଙ୍ଗେ ଘେନି
ବ୍ରହ୍ମାଦି ଶଙ୍କର ଯାହା ଗହଣରେ ଅଛନ୍ତି ପୂରି ଅବନୀ ଗୋ । ୨୩ ।

ତୁମ୍ଭେ ରତ୍ନାକରନନ୍ଦିନୀ ତୁମ୍ଭର ପ୍ରାଣବଲ୍ଲଭ ଜଗନ୍ନାଥେ
କୋଟି ଇନ୍ଦ୍ରପଦହିଁ ତୁମ୍ଭ ହାଥେ
ଲୋକଙ୍କୁ ସୁନ୍ଦରି ହେଲେ ଅସୁନ୍ଦରି ତୁମ୍ଭେ ଯାଅନ୍ତି କି ରଥେ ଗୋ
ସୁନ୍ଦରି
ତୁମ୍ଭେ ଏବେ ଉଦବେଗ ନୁହ
ମୋର ଯାଇଁ ଆହିବା ଯାଏ ସହ
ସେ ତୁମ୍ଭ ବିରହେ ଜାଣିକି + + କରିଥିବେ ଦେହ ଗୋ ।୨୪।

ଚନ୍ଦ୍ର ଅଭାବରେ କେତେହି କଷ୍ଟରେ ଚକୋର ଧଇର୍ଯ୍ୟ ଧରଇ
ମେଘ ନ ଥିଲେ ଚାତକ ତରଇ
ମକରନ୍ଦ ଦଣ୍ଡେ ନ ପାଇଲେ ଖଣ୍ଡେ ଭ୍ରମର ପ୍ରାଣ ସରଇ ଗୋ

ସୁନ୍ଦରି

ତୁମ୍ଭ ସଙ୍ଗ ନ ପାଇ ଚଉବାହା
ଅସିବାକୁ ହୋଇଥିବେ ଉତ୍ସାହା
ଚାହିଁଥିବ ବାଟ କାଲି ପରି ଭେଟ ହେବେ ତୁମ୍ଭ ପ୍ରାଣ ନାହା ଗୋ ।୧୫।

କାମ ଉର୍ଦ୍ଧ୍ୱବାହୁ ହୋଇ ଚାହିଁ ଚାହିଁ ଓଷ୍ଠାର ଅଣିମ ତାହାଙ୍କୁ
ସେ ଯେ ଉପ୍ରୋଧ ନ କରେ କାହାକୁ
ଶତ୍ରୁ ଅସମସ୍ତ କୁଟିଳ ହୃଦୟ ପ୍ରାପ୍ତ ବିଯୋଗ ଯାହାଙ୍କୁ ଗୋ

ସୁନ୍ଦରି

ମାଲାକାର ଫୁଲଲତା ପାଳଇ
ସ୍ନେହେ ଜଳ ଦେଇ ପୁଷ୍ପ ତୋଳଇ
ଅଙ୍ଗାରକ ଅଗେ ଚନ୍ଦନ ପଡିଲେ ଦଣ୍ଡକେ କାଷ୍ଠ ଜାଳଇ ଗୋ ।୧୬।

ମୋହୋ ଶପଥ ଏଣ୍ଡ୍ରାମୁଖିଁ ଲଢାଏ ପ୍ରସନ୍ନ ନ କର ଅନ୍ତର
ଏତେ ବୋଲି ନୟନୁ ପୋଛନ୍ତ ନୀର
କରେ କର ଧରି ପ୍ରବୋଧନା କରି ବେଗେ ହୋଇଲେ ବାହାର ସେ
ବିମଳା ।

ଅଡ଼ପର ମଣ୍ଡପକୁ ଚଳଲେ
ମହାପ୍ରଭୁଙ୍କ ସ୍ତମ୍ଭରେ ମିଳଲେ
ଖଣ୍ଡେଦୂରେ ଦେଖି ପ୍ରଭୁ ପଦ୍ମଆଖି ହୃଦପଦ୍ମରେ ଭଳଲେ ସେ
ଠାକୁରେ । ୧୭ ।

ଶିରେ କରଦେଇ ହସ ହସ ହୋଇ ଅପସରି ରହୁ ବିମଳା
ସ୍ନେହିଁ ବୋଲନ୍ତ ପ୍ରଭୁ ଚକାଡୋଳା
ନ କହଲେ ତୁମ୍ଭ ଭେଟରେ ହେ ଆମ୍ଭ ବେଳହାଇ ହେଲାଣି ଭୁଲା ଗୋ

ବିମଳା

ସବୁ ପ୍ରକାରେ ଆମ୍ଭ ଅଛି ଦୋଷ
ନ କହିଲେ ତୁମ୍ଭର ସବୁ ଯଶ
ଏହି ଯେନ ଯିବା ବାରଣ ବାଚଣ କରେ ସଙ୍କୋଚ ଅଙ୍କୁଶ ଗୋ
ତୁମ୍ଭେ ତ ଜାଣ ଯେ ଆମ୍ଭ ପଞ୍ଚପ୍ରାଣ ନକହି ତାହାଙ୍କୁ ଅଛିଲୁ
ନ ଜାଣିମା ଦୋଷ ଆମ୍ଭେ ପାଇଲୁ
ବଚନ କୃପଣ ହୋଇ ଅଭୂଷଣ କଥାହିଁ ଭୂଷଣ କଲୁ ଗୋ

ବିମଳା

ଏବେ କି କହ ତାହାଙ୍କୁ ଗୃହିଁରୁ
ତାଙ୍କୁ ଅନେକ ବିନୟ କହିବୁଁ
କହ ହେ ସଂଶୟ ସଙ୍କଟ୍ର ଅଭୟ କଉଁ ରୂପରେ ହୋଇବୁ ଗୋ
ବିମଳା । ୨୯ ।

କହ ତାଙ୍କ ଶୁଭ ସନ୍ଦେଶ ସକଳ * * * ଦୁଃଖୀ
ଅମ୍ଭେ ଥାଉଁ ଥାଉଁ ସେ ହେଲେ ଦୁଃଖୀ
ଏହି କଥା ଶୁଣି ନ ସରେ ରଜନୀ ବିବଶ ହୃଦେ ତା ରଖି ଗୋ

ବିମଳା

ଏତେ କହି ଶାପ ଖରେ ଛାଡ଼ିଲେ
ପ୍ରିୟା ଦୁଃଖକୁ ମନରୁ ଛାଡ଼ିଲେ
ବୋଲେ ଦୀନକୃଷ୍ଣ ଏହି ସମୟରେ ବିମଳା କର ଯୋଡ଼ିଲେ ହେ
ସ୍ବଜନେ । ୩୦ ।

# ଦ୍ୱାଦଶ ଛାନ୍ଦ

( ଅହାସ୍ତ ରଗେ ରୁକ୍ମିଣୀ ଚଉତିଶା ବାଣୀରେ ଗାଇବ )

ଶୁଣିମା ଜଗଜ୍ଜ୍ୟୋତି  ତ୍ରୈଲୋକ୍ୟ ଅଧିପତି

ତୁମ୍ଭେ ସକଳ ସୁଖରାଶି

ରତ୍ନାକରନନ୍ଦନୀ  ସୁରନରବନ୍ଦନୀ

ତୁମ୍ଭର ସେ ପାଟମହିଷୀ

ମହାପ୍ରଭୁ

ତାଙ୍କୁ ଅପୂରୁବ କରି ସୁଖ

ଅପୂରୁବ ହୋଇଛି ଏକା ପଦ୍ମମୁଖ

ଏହୁ ଯେଣ ଦୁଖରେ  ଭ୍ରମୁଛି ନରନ୍ତରେ

ତାହାଙ୍କ ମନ ଶିଳୀମୁଖ । ୧ ।

ଯତେ କଲି ଯତନରୁ  ବଧୂସର ଅଙ୍ଗରୁ

ତାହାର ନୁହଇ ସନ୍ତାପ

ଅନେକ ଶୀତକର  ଉପଚାରେ ଓହର

ନୋହେ କମାଗ୍ନି ଅବଲେପ

ମହାପ୍ରଭୁ

ତୋଳ ତୋଳ ପଙ୍କଜ ପତ୍ର

ସରୋବରମାନେ ହୋଇଲେଣି ଅପତ୍ର

ବଣିଜର ପସରା  ମାନ ଅକାଶ ପରା

କଲୁ ଚନ୍ଦ୍ରଚନ୍ଦନେ ମାତ୍ର । ୨ ।

ଏତେକେ ହେ ତପତ  ନୋହିଲା ସମାପତ

ଆଉକ ଦେବ ମୁଁ ଅଣାଇ

ଜଳଯନ୍ତ୍ର ମନ୍ଦିରେ ପଲ୍ଲବ ଶଯ୍ୟାରେ
ଶୁଅଇ ଅଇଲା ଜଣାଇ
ମହାପ୍ରଭୁ
ଏବେ ଯେ ସୁନ୍ଦର ତାହାଙ୍କର
ସହଜେ ହେ ପ୍ରଭୁଙ୍କୁ ନାହିଁତ ଉତ୍ତର
ଯହିଁକାଳେ ବଦେଶୀ ଗୃହେ ମିଳନ୍ତି ଅପି
ସେକାଳେ ଗୁଣ୍ଡିଗ୍ଧ ବହାର । ୩ ।

ନୋହିଲେ କମ୍ପା ଚମ୍ପା ଶମ୍ପା ହେମ ହସନ୍ତା
ସୁବର୍ଣ୍ଣ ବବର୍ଣ୍ଣ ହଅନ୍ତା
ପୂର୍ଣ୍ଣଚନ୍ଦ୍ରମଣ୍ଡଳ— ଛଡ଼ ମୁଖମଣ୍ଡଳ
ଉଭଜ ଉପରେ ବସନ୍ତା
ମହାପ୍ରଭୁ
କୁଟିଳ ଚକ୍କଣ କେଶ ପାଶ
କଳାରେ ଯେ ଭ୍ରମର କରେ ଉପହାସ
ଏବେ ସେ ସୁମନସ ବେଶ ହୋଇ ବନାଶ
ବନାଶ କରଇ ମାନସ । ୪ ।

ବମ୍ବ ବନ୍ଧୁଳ ଛର କରେ ଯେଉଁ ଅଧର
ସେ ଏବେ ସବୁ ଛାଡ଼ିଲା
ଜ୍ୟୋତଧର ମୁକୁତା ହୀରା ଅତ ଶୋଭତା
ଦଶନେ ନରସ ଜଡ଼ିତା
ମହାପ୍ରଭୁ

ଯହିଁ ବଚନ ସମତାପାଇଁ
ସରସ୍ୱତୀଠାରୁ ବାଣୀ ଶିଖନ୍ତି ଯ ଇ
* * * * * *
* * * ଭ୍ରମନ୍ତ ହୁଅଇ । ୬ ।

ଏବେ ସେ ସ୍ୱରଭଙ୍ଗ    କୃଷ ପାଣ୍ଡୁର ଅଙ୍ଗ
କମ୍ପ ପୁଲକ ସ୍ୱେଦ ଜାତ
ଅଶ୍ରୁ ପ୍ରଳୟ ଦେଖ    ଧଇର୍ଯ୍ୟ * * *
* * * *

ମହାପ୍ରଭୁ

ସେହୁ ମୋ ଯିବାକୁ ବାଟ ଚାହିଁ
ଯୁଗପ୍ରାୟ ମଣୁ ସେ ଥିବେ ଦଣ୍ଡକହିଁ
ଏହିକ୍ଷଣି ବଳାତ୍ୟେ    କରିବେ ଦେହତ୍ୟାଗେ
ବୋଲି ଯେ ଅଛିଅଛୁ କହି । ୬ ।

କହନ୍ତି ଏହି ରୂପେ    ଗୋ ପ୍ରାଣସହି କୋପେ
ଯାହା କହିଲେ ସେ ପ୍ରମାଣ
ସହଜେ ହେ ଅନ୍ତର    ନାହିଁ ତାଙ୍କ ଅମ୍ବର
ପାଇ ନାହାନ୍ତି ସେ କଷଣ
ଅଗୋ ସଖି

ଏବେ ତୁମ୍ଭେ ହେ ବେଗେ ଯାଅ
ଅସୁଛନ୍ତି ବୋଲି ତାଙ୍କ ଆଗେ କହ
ଯେମନ୍ତେ କୋପ ଜାତ    ନୁହେ ସେ ରୂପେ ଚିନ୍ତ
ପ୍ରବୋଧନା କର ମଣାଅ । ୬ ।

କାଲି ଅବଶ୍ୟ ମୀଳ ଦେଲ ଗିରି ଜବରେ
ଅବସାନ-ସମୟେ ହେବୁ
ତୁମ୍ଭଙ୍କୁ ଯେଣ ତାଙ୍କ ହୃଦ ବେଦନା ଯାକ
ବିନୟେ କହି ବିନାଶିବୁ
ଆଗୋ ସଖି

ତୁମ୍ଭେ ତ କହିଲ ଆମ୍ଭଙ୍କୁ
ଅବକାଶ ନୋହିଲା ଆମ୍ଭ କହିବାକୁ
କେବଳ ତାଙ୍କ ପାଖ ଖଣ୍ଡିଲା ଧନୁ ଲେଖ
ହୋଇଲା କାମ ବିଶିଖକୁ । ୮ ।

ଶ୍ରୀମୁଖୁ ଯେତେ ଶୁଣି ଶିରରେ ଦେଇ ପାଣି
ବିମଳ ଲୋଚନୀ ଚଳଲେ
କ୍ଷୀରସାଗର ସୁତା ଜଗନ୍ନାଥ ବନିତା
କ୍ଷମୁରେ ତୁରତେ ମିଳଲେ
ଅହେ ଜନେ

ପ୍ରସନ୍ନ ଦେଖି ସଜନୀର
ହୃଦ ପଦ୍ମେ ହରଷ କଲେ ଅବତାର
ବିମଳ ନେତ୍ରୀ ହସି ବୋଲନ୍ତି ପ୍ରଭୁ ଅସି
ପ୍ରବେଶ ହେଲେଟି ତୁମ୍ଭର । ୯ ।

ଅଜ୍ଞାଦେଲେ ଏତେ ହେ ତୁମ୍ଭେ ଯାଇ ବେଗେ ହେ
ଆମ୍ଭ ବିଜେ ବାରତା କହ
କରଧର ଏତେ ହେ କହିବ ଆମ୍ଭ ସ୍ନେହେ
ମଣ୍ଡନେ କରିବେ ସେନେହ

ଅଗୋ ସଖି
ଏବେ ମାଜଣା ବେଗେ ସାର
ମଣୋହିରେ ମୋ ବୋଲ କର ବଜେ କର
ନାନା କୁସୁମ ଗଭା ମସ୍ତକେ କର ଶୋଭା
ସୁମନ ମାଳଙ୍କୁ ଉବର । ୧୦ ।
ଅର୍ଦ୍ଧଚନ୍ଦ୍ର ଦୂଷଣ ଲଲାଟରେ ଭୂଷଣ
କର ସିନ୍ଦୂର ଉର୍ଦ୍ଧ୍ୱ ରଚା
ମଦକଲ ଖଞ୍ଜନ ଗଞ୍ଜନ ନୟନରେ
କଜ୍ଜ୍ୱଳ ହେଉ ଉଜ୍ଜ୍ୱଳତା
ଅଗୋ ସଖି
ସୁରଙ୍ଗ ଅଧର କମ୍ପାଉ
* * ଥିବୁ ଯାଉ
ଜନ ଲୋକ ମଣ୍ଡନ ନୟନ ବମଣ୍ଡନ
ଅଙ୍ଗେ ମଣ୍ଡନ ମଣ୍ଡିହୋଉ । ୧୧ ।
ଶୁଣି ଅଲପ ହସି ବୋଲନ୍ତି ପଦ୍ମବାସି
ସତ କହ * *
* * କୁ ହୃଦୟ—ସସାର ମଧ୍ୟେ ତ ନ'ଦେଖି
* * * *
ଅଗୋ ସଖି
ବଚନ ଅମୃତୁଁ ଅଧିକ
ଜାଗରଣରେ ବକ୍ର କର ପାରନ୍ତି ଧିକ
ପୂଷବନ୍ତ ଯେମନ୍ତ ଦେଖିବାକୁ ତେମନ୍ତ
ଗନ୍ଧ ଜାଣି ନ ପାରେ ଲୋକ । ୧୨ ।

ମୁଁ ତାଙ୍କର ପ୍ରିୟ ହେଲେ ରଖ ତାଙ୍କର ମାୟା
ଜାଣିବାକୁ ନୋହେ ଭରସା
ନୋହିଲେ କି ବରଷା ଜାଲେ ମୋ'ର ଏ ଦଶା
ବିଧାତା କରେ ଲୋକହସା
ଅଗୋ ସଖି

କହ କହ ପ୍ରଭୁଙ୍କ କଥା
ଶୁଣି ମୋର ମନରୁ ଛଡ଼ୁ ମହାବ୍ୟଥା
ଶ୍ୟାମସୁନ୍ଦର ଅଙ୍ଗ ହୋଇ ନାହିଁ ନା ଭଙ୍ଗ
ଆଉ ଲୋଡ଼ିବା ସବୁ ବୃଥା । ୧୩ ।

ସବୁ ବେଶ ଭୋଜନ ଶ୍ରୀମୁଖ ଦରଶନ
ମରୁ ସମ୍ପତ୍ତି ମୋର ସେହି
ଘନରସ ଗୃତକ ଜ ପାଇଥିବା ଯାକ
ସୁଖକୁ ବହଇ ସେ ନାହିଁ
ଅଗୋ ସଖି

ପାଇଲି ମାଟନ୍ତି ବସନ୍ତକୁ
ତରୁଲତା ଧରନ୍ତି ନବପଲ୍ଲବକୁ
କ କ କର କୁମୁଦ ଛାଡ଼ଇ ତାର ନାଦ
ଚନ୍ଦ୍ରମା ଉଦୟ କାଳକୁ । ୧୪ ।

ଯେତେବେଳରେ ରଥେ ବସିବେ ପ୍ରଭୁ ପଥେ
ସବୁ ସୁଖ ସମ୍ପତ୍ତି ହେବ
ସପତ ସ୍ୱର ରାଗ ଜନ୍ମିଲି ପ୍ରାପ୍ତେ ରାଗ
ଅତ୍ୟନ୍ତ ଭାବକୁ ପାଇବ

ଏହା ଶୁଣି

ହସି ବୋଲନ୍ତି କମଲାକ୍ଷୀ

ଏକଥାରେ ସଂଶୟ ନାହି କମଲାକ୍ଷୀ

ଦକ୍ଷିଣ ମୂର୍ତ୍ତିସାର    ରଥ ମଣ୍ଡଣି କର

ହକେ ଉତ୍ସାହା ପଡ଼ିଅଛୁ । ୧୫ ।

ଏହି ସମୟେ ଆସି    ଜଣାଏ ଏକ ଦାସୀ

ଶୁଣମା ଠାକୁରାଣୀ ମାଏ

ନନ୍ଦଘୋଷରେ ବସି    ପ୍ରବେଶ ହେଲେ ଆସି

ପ୍ରବାସୀ ପ୍ରଭୁ ଦେବରାଏ

ଅଗୋ ସଖୀ

ବାଟରେ ଅଇଲି ମୁଁ ଦେଖି

ବଡ଼ଦାଣ୍ଡ ଗହଳର ନୁହଇ ଲେଖି

ଦୀନକୃଷ୍ଣ କହଇ    ନୀଳାଦ୍ରିଙ୍କ ଅନାଇ

ଅପଲକ ହୋଇଛୁ ଆଖି । ୧୬ ।

## ଶ୍ରୀ ଜଗନମୋହନ ଗୁଣ୍ଡିଚ୍ଚ ବର୍ଣ୍ଣନା

## ତ୍ରୟୋଦଶ ଛାନ୍ଦ

( ମାଳଶ୍ରୀ ରାଗେ ପଞ୍ଚ ଛାବ ଧ୍ୱନରେ ଗାଇବ )

ଅଗ୍ରେ ବନ୍ଧୁ ପ୍ରଭୁ ତାଳଧ୍ୱଜରେ
ମଧ୍ୟେ ଦେବୀ ତୁମ୍ଭ ପ୍ରଭୁ ପଛରେ
କରେ ଧରିଛନ୍ତି ଧନୁ ଶରକୁ
କି ଦିଶୁଛନ୍ତି ନିକଟ ଦୂରକୁ
କି କହିବ ତାହା ଆହା ସେ ବିପୁଳ ବାହା ଦିଶୁଅଛି ଯାହା
ତୁମ୍ଭ ଅଙ୍ଗ ସଙ୍ଗ ରଙ୍ଗ କରୁଛି ଏହା । ୧ ।

ନାହିଁ ଚନ୍ଦ୍ରରେଖା ସୁବର୍ଣ୍ଣଲତା
ବିରହେ ହୋଇଛନ୍ତି ଦୁର୍ବଳତା
ହେଲେ ମଳ ତୂଳ ଅଙ୍ଗକୁ ଭରି
ଶୋକ ବେଗରକୁ ଅଛନ୍ତି ଧରି
କେବଳ କର୍ପୂର ଅଳକା ବଳକ କର୍ପୂର ଉଜ୍ଜଳତା ଶୋହେ
କାମଦେବ ବାମ ଶ୍ୟାମ ହୋଇଛି ମୋହେ । ୨ ।

(ମାଗୋ) ସାରଥି ରଥ ବାହୁଛି ବେଗରେ
ପ୍ରବାତେ ଯେସନେ ବୋହିତ ସାଗରେ
ପଡ଼ି ଅଛନ୍ତି ମହା ଉତ୍କଣ୍ଠରେ
ମଳୟାକ * *
ଚାଲ ଆମ୍ଭେ ଏବେ ଦର୍ଶନ କରିବା ଜଗତୀ ଉପରେ ରହି
ମାଏ ବୋଲନ୍ତି ଭଲ କହିଲୁ ଗୋ ସହି । ୩ ।

ଏତେ ବୋଲି ଜଗତିରେ ଅବୋହୁ
ଶୁଣିଲେ ଲୋକେ ନ ଦିଶଇ ମହୀ
ପଡ଼ୁଛି ବଡ଼ଦାଣ୍ଡେ ବଡ ଭିଡ
ଠେଲା ଠେଲି ପେଲା ପେଲି ହାବୋଡ଼
ରଥ ଗଜ ଅଶ୍ୱବଳ ଯେନ ବିଶ୍ୱମ୍ଭର କରନ୍ତି ବିଜୟେ
ନିରନ୍ତର ମହିମା ତାଙ୍କ ଜୟେ ଜୟେ । ୪ ।

ସ୍ୱର୍ଗପୁର ନର ଗନ୍ଧର୍ବ ବାଦ୍ୟ
ଷଦବ୍ୟେ ନୃପ୍ତ ଅଛି ହସ୍ତ ପଦ
ଘନ ଘନ ବାଜେ ଖଗକାହାଳୀ
ଶୁଭେ ମଙ୍ଗଳ ଗୀତ ହୁଳହୁଳି
ମଙ୍ଗଳ ପାଠ ଦ୍ୱିଜବରେ ପଢନ୍ତି ଜୟେବାର କରେ ବନ୍ଦୀ
ବୃନ୍ଦାରକବୃନ୍ଦ ଯେତେ ଅଛନ୍ତି ବନ୍ଦି । ୫ ।

ଅପସରାମାନେ କରନ୍ତି ନୃତ୍ୟ
ଅକାଶୁ ଫୁଲ ପଡ଼ି ଅପ୍ରମିତ
ରହି ରହି ହୋଇ ବିଜେ କରନ୍ତି
ଜୁର ଦେଇ ଚତୁର୍ବର୍ଗ ସମ୍ପତ୍ତି
ବଡ ଦାଣ୍ଡେ ଅନ୍ତପାଠ ବାହି ବାଗହୋଇ ରହେ ସିନ୍ଧୁ ଜେମା
ମହାସୁଖେ ଦେଖନ୍ତି ମହା ସୁଖସୀମା । ୬ ।

ମୁଖପଦ୍ମ ନେତ୍ର ଭ୍ରମର ପଡ଼ି
ସ୍ନେହ ମଧ୍ୟରେ ନ ପାରଇ ଛାଡି
ମନ ହରଙ୍ଗେ ଶ୍ରୀଅଙ୍ଗ ଭମାଲେ
ବଶ ହୋଇ ବସି ରହେ ନିଷ୍ଫଳେ

ଦେଖି ଜନମାନେ ହରଷିତ ମନେ ଆନନ୍ଦେ କରନ୍ତି ସ୍ତୁତି
ଜୟ ଜୟ କମଳା ଦେବୀ ପ୍ରାଣପତି । ୭ ।

ଦାସୀ ଦେବୀଙ୍କି କହନ୍ତି ମଣାଇ
ଶୁଣିମା ମାଏ ସାବଧାନ ହୋଇ
ରହୁ ରହୁ ଯା କରନ୍ତି ବଜୟେ
ଏହୁଷ୍ଟ ତୁମ୍ଭ ଅନୁରାଗ ଭୟେ
ରଥହିଁ ପତାକା ବ୍ୟାକେ କହେ ଏକା ମୋର କିଛୁ ଦୋଷ ନାହିଁ
ପ୍ରଭୁ ଅଜ୍ଞା ମାହକେ ନେଇ ଥିଲି ବହୁ । ୮ ।

ବାହୁକ ଦଶନରେ ତୃଣ ଧରି
କର ଯୋଡ଼ି କେଶ ମୁକୁଳ କରି
ସେହୁ ଗୁହାରି କରଇ ନୃପତେ
ନାହିଁ ମୋ ଅପ୍ରାଧ ନ ଦଣ୍ଡ ମୋତେ
ମୁଁ ଅଶ୍ୱପାଳକ ଶତାଙ୍ଗ ଚାଳକ ମୋହ ବୁଝି ଅବା କେତେ
ଏହା କଲେ ସମସ୍ତ ଖଟଣି ସାମନ୍ତେ । ୯ ।

ଶୁଣି କମଳା ହୋଇ ହସ ହସ
ବୋଇଲେ ସେବକର କଉଁ ଦୋଷ
ତାଙ୍କୁ କାହିଁପାଇଁ କରିବା ରୋଷ
ସେ ବୋଇଲେ ନଳ କର ପ୍ରକାଶ
ଏ ପ୍ରଭୁ ଆଜ୍ଞା କରି ନୁହଇ ଅବଜ୍ଞା ଦାସ ହେଲେ * *
ମୋହ କରଇ ପ୍ରଧାନ ପୁରୁଷ । ୧୦ ।

ଅନୁରାଗ ଥିଲେ ହୁଅଇ ମାନ
ଘେନଲେ ବଡ଼ କଥା ହୁଏ ସାନ

ଦେଖି ତ୍ରିଭୁବନ ଭକ୍ତଙ୍କୁ
ଏବେ ଗଲ ଅମ୍ଭେ ସମସ୍ତେ ହେ ଦମ୍ଭେ କବାଟ ଦେଇ ରହିବା
କଇତବେ ନାରଣ ବଚନ କହିବା । ୧୧ । ।

କି ବୋଲନ୍ତି ପ୍ରଭୁ ତାହା ଶୁଣିମା
ଅନୁରାଗ ରାଗ ତହିଁ ଜାଣିମା
ବୋଲନ୍ତି ଯେ ବଚ୍ଛେଦରେ ସ୍ନେହ
ସବୁରି ବାରତା ଏହିଠାରେ ରହି
ତୁମ୍ଭ ଦ୍ୱାର ଯେବେ ରଖା ଯାଇଁ କର ଜାଣିମା ପ୍ରଭୁଙ୍କ ରୀତି
ଏକା ନୋହିବ ତାଙ୍କ ଅଗ୍ରକେ ଅପ୍ରୀତି । ୧୨ ।

ଏମନ୍ତ କହୁଁ କହୁଁ ଜଗଦୀଶ
ସିଂହ ଦ୍ୱାରରେ ହୋଇଲେ ପ୍ରବେଶ
ହସି ଆଜ୍ଞାଦେଲେ ବଳଦେବଙ୍କୁ
ବେଗେ କରିବା ହସ୍ତ ଉତରକୁ
ଶୁଣି ପୀତପାଣି ମନ୍ତ୍ରସିଦ୍ଧଠାଣି ବେଗେ କଲେ ଉତଲକୁ
ଏହି ସମୟେ ଶୁଭ ହେଲା ସୁଭଦ୍ରାଙ୍କୁ । ୧୩ ।

ପଛକୁ ରହି ପ୍ରଭୁ ଦେବ ରାଟ
ହୋଇଲେ ପ୍ରାଣପ୍ରିୟା ସାଙ୍ଗେ ଭେଟ
କାମ ଅନେକ ଦିନୁ ଥିଲା ପାଞ୍ଚି
ସେହି କାଳରେ ହେଲା ସବ୍ୟସାଚି
ଜଗତ ନୟନ ନିର୍ବାଣ ଅୟନ ଜାଣିଲେ ସେହି ସମୟେ
ମହା ପାପୀ ଛାଡ଼ିଲେ କାଳଦଣ୍ଡ ଭୟେ । ୧୪ ।
କାମିନୀ କାମ ହୋଇ ପ୍ରାପତ
ଅର୍ଥ ଅର୍ଥରୁ ହୋଇଲେ ନିବର୍ତ୍ତି

ସେ ଦେଶ କାମ ଧନୁ ପ୍ରାପ୍ତ ହେଲା
ଯେ ଯାହା ବାଞ୍ଛା କଲା ତାହା ହେଲା
ବନ୍ଦପନା ହୋଇ ରଥରୁ ଓହ୍ଲାଇ ମଣ୍ଡାରେ କଲେ ବିଜୟେ
ସବୁ ନଗରେ ପୂର୍ଣ୍ଣ ହେଲା ଜୟେ ଜୟେ । ୧୫ ।

ଦେଖିଲେ ଦ୍ୱାରେ ପଡ଼ିଛି କବାଟ
ହସିଲେ ମହାପ୍ରଭୁ ଦେବ ରାଟ
ଅନୁରାଗ ଅନୁରୂପରେ ମାନ
ସହଜେ ଭାବଗ୍ରାହୀ ଭଗବାନ
ବୋଲନ୍ତି ଗୋ ଦାସୀ କପାଇଁ ପ୍ରବାସୀଠାରେ ଅନାଦର ଏତେ
ଏବେ ଜଣାଅ ଠାକୁରାଣୀଙ୍କୁ ଅଗ୍ରତେ । ୧୬ ।

ଦାସୀ ବୋବନ୍ତି ଆମ୍ଭ ପ୍ରଭୁ ଯାଇ
କରି ଅଛନ୍ତି ମହା କଠକାଇ
ଠାକୁରାଣୀଙ୍କ ଶ୍ରୀ ଅଙ୍ଗ ଅଳସ
ବିରହେ ହୋଇଛନ୍ତି ଅତି କୃଶ
ଚନ୍ତା ଜ୍ୱରେ ମନ ସବୁର ବିମନ କାହାରହିଁ ନାହିଁ ସୁଖ
ଏ ପୁରକୁ ଅଇଲ ପାଇବାକୁ ଦୁଖ । ୧୭ ।

ପ୍ରଭୁ ବୋଲନ୍ତି ଏ କମ୍ବୁ କନ୍ଟକ
ଏଥି ମିଳଇ ଚତୁର୍ବର୍ଗ ଯାକ
ରାଜା ଯହିଁରେ ବଇକୁଣ୍ଠବାସୀ
କମଳା ଯାହାର ପାଟ ମହିଷୀ
ସେ ନଗ୍ରରେ ଅସି ଅର୍ତ୍ତିରେ ପ୍ରବାସୀ ତେଜଇତ ଯେବେ ଅଶ
ତେବେ କାହାକୁ ବୋଲିବା କର୍ମର ଦୋଷ । ୧୮ ।

ଶୁଣି କମଳା ହସ ହସ ହୋଇ
ବୋଇଲେ ଦାସୀ ଦ୍ୱାର ଦିଅ ଫେଇ
ଝଟିତି ହୃଦରେ ଫେଡ଼ି କବାଟ
ହୋଇଲେ ଲକ୍ଷ୍ମୀ ନାରାୟଣ ଭେଟ
ତେତେବେଳେ ଯାହା ହୋଇଲା କେ ତାହା କହିବ ଅବା ବଚନେ
କବି ଅପମାନ ପାଇବେ ତ୍ରିଭୁବନେ । ୧୯ ।

ଅପୁତ୍ରିକ ଲୋକ ପାଇଲା ପୁତ୍ର
ଅଜନମ ଅନ୍ଧ ଲଭିଲା ନେତ୍ର
ନିଧି ପଡ଼ିଲାକ ଦରିଦ୍ର ହସ୍ତେ
ଲେଖିଲେ ଏ ଆନନ୍ଦ ଅବା କେତେ
ଅରୁଣ ଉଦୟ ଦେଖି ଚକ୍ରଚୟ ଚନ୍ଦ୍ରମା ଗୃହିଁ ଚକୋର
ନେତ୍ର ପ୍ରୀତି ହୋଇଲେ ନାଗରୀ ନାଗର । ୨୦ ।

ଏରୂପେ ସୁଖ ସପନ୍ତି ବଢ଼ାଇ
ଶ୍ରୀଅଙ୍ଗ ସିନ୍ଦୂର ସେଭା କଢ଼ାଇ
ମହାସ୍ନାନ ସାରି ପ୍ରବେଶ ହେଲେ
ଅମୃତ ଯୋଗାଡ଼ ମଣୋହି କଲେ
ଅଡପନ ଶେଷ କରି ଜଗଦୀଶ ବଡ଼ଅ ଲାଗିରେ ବିଜେ
ଅଙ୍କିଦେଲେ ପ୍ରିୟାଙ୍କୁ ଗୃହିଁ ମୁଖାମ୍ବୁଜେ । ୨୧ ।

ଆଜକୁ ଅମ୍ଭ ବିଜେ କରିବାର
ନବ ଦିନ ନବ ଯୁଗ ପ୍ରକାର
ତୁମ୍ଭ ସ୍ନେହ ଦେଇ ନିଦ୍ରା କାମିନୀ
ଦିନେ ଦେଖା ଦେଇ ନାହିଁ ଯାମିନୀ

କର୍ପୂର ଫୁଲେ ଚନ୍ଦନ ବେଶମାନ କେହୁ ନୋହେ ସୁଖକର
ମନ ଭ୍ରମୁ ପାଶରେ ଥାଇ ଈଶ୍ୱରର । ୧୨ ।

ପ୍ରଚ୍ଛଦପଟ୍ଟ ଯେତେ ଅନ୍ତରେ ଥିଲେ
ଅଧର ନିର୍ମଳ ଦଶନ ଭଲେ
ସେହୁ ପ୍ରକାରେ ଭ୍ରମୁ ଗୃହ ଦେଖି
ଦେବରେ ଧର୍ମଯାନ ଥିଲୁ ରଖି
ଗୀତ ବାଦ୍ୟ ନୃତ୍ୟ ହେଲେହେଁ ଅଗ୍ରତ ନ ଯେନଇ ତହିଁ ଚିତ୍ତ
ଦ୍ରବ୍ୟ ଧ୍ୟାନରେ ମନ୍ଦା ଯୋଗୀନ୍ଦ୍ର ଯେମନ୍ତ । ୧୩ ।

ଷଡ଼ରସରେ ନାନା ଭୋଗମାନ
ସ୍ୱାଦୁ ନୋହନ୍ତି କର ଆନ ଆନ
କମଳା କହନ୍ତିବେଳୁ ସନ୍ଦେଶ
ବୁଦ୍ଧି ବିବେକ ହୋଇଲି ବିନାଶ
ବଇଷା କୋଇଲ ପ୍ରାସ୍ତୁ ଚଡକାଳ ମୁଖରୁ ନଇଲି ଭାଷା
ବଡ଼ କର କେତେ କହିବୁ ସେ ଦଶା । ୧୪ ।

ଏମନ୍ତ କହ କାହ୍ନୁ ସ୍ନେହ ବାଣୀ
ସନ୍ତୋଷ କଲେ ଦେବୀ କମଳଣୀ
ବସ୍ତ୍ରଭ ବଢ଼ି ଶିଂଗାର ବଢ଼ାଇ
ଦେବତାମାନଙ୍କୁ ମେଲାଣି ଦେଇ
ଦିବ୍ୟ ପଲଙ୍କ ଅଙ୍କରେ ପହୁଡ଼ିଲେ କମଳା କରନ୍ତି ସେବା
ଏତେକେ ରହିଲା ଦୀନକୃଷ୍ଣ କହିବା । ୧୫ ।

---

ଜଗମୋହନ ସ୍ଥାନ ୮

# ଚତୁର୍ଦ୍ଦଶ ଛାନ୍ଦ

ବସନ୍ତ ରାଗେ କଳସା ବାଣୀରେ ଗାଇବ

ଏଥୁଅନନ୍ତରେ ନିଶି ହୁଏ ଅବସାନ
ସମସ୍ତ ଦିଗେ ଶୁଭିଲା ତାମ୍ରଚୂଡ଼ ସ୍ୱନ
ଉପବନ ବନେ ପକ୍ଷୀ କଲେ କୋଳାହଳ
ଚକ୍ର ଚକ୍ରବାକୀ ସଙ୍ଗତରେ ହେଲା ମେଳ । ୧ ।

ରାଜ୍ୟଭ୍ରଷ୍ଟ ରାଜାପ୍ରାୟେ ରାଜା ଜ୍ୟୋତିହୀନ
କୁଗ୍ରାମ ଗୁଣୀ ପ୍ରାୟେ ଚକୋରେ ହେଲେ ଦୀନ
+ + + +
ଅଦୃଶ୍ୟ ତାରକା ପ୍ରାୟେ ତାରକା ଅଦୃଶ୍ୟ । ୨ ।

ରୂପାଜୀବା ମନ୍ଦିରରୁ ବାହାର ଭୁଜଙ୍ଗ
ଚୋର ପ୍ରାୟେ ହୋଇଗଲେ ତରଙ୍ଗ ତରଙ୍ଗ
ଉପପତିମାନେ ଧୂପମଣକ ପରାୟେ
ପଳାଇ ପଶିଲେ ଯାଇ ଆପଣା ନିଳୟେ । ୩ ।

ମିଥ୍ୟାବାଦୀ ବଚନଙ୍କୁ ଲୋଭୀ ପ୍ରାୟେ ହୋଇ
ସଙ୍କେତ ସ୍ଥାନେ କେ ଅଭିସାରକୀ ନ ଯାଇ
ଅବିବେକୀ କୃପଣ ଦ୍ୱାର ମାଗୁଣି ପ୍ରାୟେ
କାମାତୁର ହୋଇ ଖର ନିଶ୍ୱାସ ପକାଏ । ୪ ।

ବରବେଶ ପ୍ରାୟେ କଉଁ ଶଠର ଅକୃତ
ଉପହାସ କଲା ଦେଖି ଖଣ୍ଡିତା ଯୁବତୀ
ହସରସ ମିଶାଇ ବୋଇଲା ଆହେ ନାହା
କାଲିରାବେ କାହାକୁ ହୋଇଲ ତୁମ୍ଭେ ବେହା । ୫ ।

ଗଣ୍ଡରେ ତାମ୍ବୂଲ ବୋଲ ଅଧରେ କଜ୍ଜଳ
ଏତେ ବିପରୀତ ବେଶ ହେବାରୁଁ କି ଫଳ
କପାଳେ ଅଳକା ଚିତା ଭଗ୍ନ ସ୍ଫୁଟ କର୍ମ
ଶ୍ରମ ପାଇ ପକାଇ ଅଇଲ ହୃତ ସ୍ତୋମ । ୬ ।

କଉଶିକ ପ୍ରାୟେ ବସିଥିଲ କାହା କୁଟେ
ଏବେ ଅସିଅଛ ପଶିବାକୁ କେଉଁ କୋଟେ
କହୁଁ ରମଣୀ ଭୁମ୍ବର ପାଶରୁ ଉଠିଲା
କୃମ୍ୟାଲସ ହୋଇ ଉଠ ବୋଲି ତୋଳି ଦେଲା । ୭ ।

ନିଶାଚର ପ୍ରଭା ଗ୍ରହପ୍ରାଏ ଗଲା
ସିନ୍ଧୁଘୋଷ ଜିଣି ଦଧିମନ୍ଥନ ଶୁଭିଲା
ରମଣୀମଣି ରମଣୀମଣିର ପରାଏ
କଳରବେ କଳରବ କଲେ ଅଛିଣ୍ୟେ । ୮ ।

ଉତ୍ତମ କାମିନୀଙ୍କ ନିଶ୍ୱାସ ପ୍ରାୟେ ହୋଇ
ଆହ୍ଲାଦ ସୁଶୀତଳ ପବନ ବହଇ
ନାଗରୀଙ୍କି ନାଗର କଲା ପରାୟେ ସ୍ଫୁଟ
କୁସୁମ ପାଶେ ମଧୁପେ ମଧୁର କୂଜନ୍ତି । ୯ ।

କୃଷ୍ଣକଥା ଶ୍ରବଣରେ ପାତକ ପରାୟେ
ଅନାଉଁ ଅନାଉଁ ଅନ୍ଧକାର ଗଲା କ୍ଷୟେ
ଦୀନବନ୍ଧୁ ପ୍ରାୟେ ଦିନବନ୍ଧୁ ପ୍ରକାଶିଲେ
ଶ୍ରୀକରରେ ଅରବିନ୍ଦ ଚକ୍ର ପ୍ରକାଶିଲେ । ୧୦ ।

ଦେବାଳୟମାନଙ୍କରେ ଶୁଭେ ଶଙ୍ଖଧ୍ୱନି
ସ୍ନାନ କରିବାକୁ ସମ୍ଭ୍ରମରେ ଗଲେ ମୁନି

ଶାରୀଶୁକମାନେ ମୂକଭାବକୁ ଛାଡ଼ିଲେ
ଶ୍ରୀରାମ ଶ୍ରୀରାଧାକୃଷ୍ଣ ନାମକୁ ପଢ଼ିଲେ । ୧୧ ।

ଗୃହବର୍ତ୍ତି ବ୍ୟାପାରେ ହେ କଲେ ପରବେଶ
ଚନ୍ଦ୍ରଧର ସ୍ୱମତେ କେ ହୋଇଲେ ପ୍ରବେଶ
କାକମାନେ ଡାକ ଦେଇ ବସାରୁ ଉଡ଼ିଲେ
ପଥିକେ ଯେ ଯାହା ଦ୍ରବ୍ୟମାନ ସଜାଡ଼ିଲେ । ୧୨ ।

ଜଗନ୍ନାଥ ଦେବରାଜା ହେଲେ ଅପହୁଡ଼
ସେବକେ ଖଟିଲେ ଯାହିଁ ମାଜଣା ଯୋଗାଡ଼
ଖଟଣୀ ସାମନ୍ତେ ଅବୋରଲେ ଯେଝା ସେବା
କେ କହିବ ତାଙ୍କ ଭାଗ୍ୟ ବଚନରେ ଅବା । ୧୩ ।

ଦେବଙ୍କୁ ଦୁର୍ଲ୍ଲଭ ଯେଉଁ ପ୍ରଭୁ ଦରଶନ
ଅଷ୍ଟାଙ୍ଗ ଯୋଗରେ ଯୋଗୀ ଯାହା କରେ ଧ୍ୟାନ
ସେ ପ୍ରଭୁ ସେବା ସୁଲଭ ତାଙ୍କୁ ନିଶିଦିନ
ଏହି ହେତୁ କରି ମୋକ୍ଷ ତାହାଙ୍କୁ ଅଧୀନ । ୧୪ ।

ବେଶ ଶେଷେ ଧୂପ ସାରି ଆଚମନ କରି
ବଡ଼ଅ ଲଡ଼ିରେ ବସେ ନୀଳାଦ୍ରି କେଶରୀ
ଏହିରୂପେ ଭିନ ଧୂପ ପାଞ୍ଚ ଅବକାଶ
ବଢାଇ ଶୟନ କଲେ ପରମ ପୁରୁଷ । ୧୫ ।

ଅୟନ ପାଶ ଲେଉଟ ବରଷାର ଗଲା
ଶରଦ ସମୟ ଆସି ପ୍ରବେଶ ହୋଇଲା
କୃପଣ ବାଗାଡମ୍ବର ଲୋକ ପ୍ରାୟ ହୋଇ
ଧୂନ କଲେ ମେଘ ଜଳ ଦାନକୁ ନ ଦେଇ । ୧୬ ।

ବସ୍ତ୍ର ବସ୍ତ୍ରାର ହୃଦରେ କଉସ୍ତୁଭ ପ୍ରାୟେ
ନିର୍ମଳ ଗଗନରେ ଚନ୍ଦ୍ରମା ଶୋଭି ପ୍ରାୟେ
ଚାରୁ ତାରକା ନିକର ସୁନ୍ଦର ଦିଶନ୍ତି
ଅମୃତ ଅନ୍ଧାରେ ଯେସନେ ଚନ୍ଦ୍ରକାନ୍ତ ପନ୍ତି । ୧୭ ।

ସାଧୁ ହୃଦ ପ୍ରାୟେ ଦିଗ ଦିଶିଲେ ପ୍ରସନ୍ନ
ସୁଖୀ ହେଲେ ଚକୋରେ ଶୃଚକେ ହେଲେ ଦୀନ
ଯଥ ବନେ ପନ୍ଥୀ ଯେସନେ ବେଶକୁ ନ ରକ୍ଷି
ସେହ୍ନ ରୂପେ ଶିଖୀ ଛନ୍ନ ଭିନ୍ନ କଲେ ପକ୍ଷେ

ଚନ୍ଦ୍ର ଖଣ୍ଡ ପ୍ରାୟେ ମୃନିକୁସୁମ ପ୍ରକାଶ
ଶୃମର ପ୍ରାୟେ ଦିଶିଲେ ଛୋଟ୍ଟ ସୁମନସ ।
ଗ୍ରାମାବାସ ପ୍ରାୟେ କାଶ ବିକାଶ ହୋଇଲେ
ମାନସରୁ ମାନସର ବାସିଏ ଅଇଲେ । ୧୯ ।

ଧରଣୀ ପୁଷ୍କରଣୀରେ ହେଲେ ଆସି ସଙ୍ଗ
ସଙ୍ଗେ ଯେନ ରମଣୀକ କଲେ ନାନା ରଙ୍ଗ
ସମସ୍ତ ଜନମାନଙ୍କ କଳୁଷ ଛୁଟିଲେ
ସୁମୁଖୀ ମୁଖ ପରି ଏ କମଳ ଫୁଟିଲେ । ୨୦ ।

ପୀତାମ୍ବର ଅଙ୍ଗେ ପୀତ ଅମ୍ବର ପରିପ୍ରାୟେ
ବନ୍ଦନମାନଙ୍କରେ କେ ପର ଶୋଭା ପାଏ ।
ରସାଳ ପର୍ଣ୍ଣ ତୋରଣ ପ୍ରାୟେ ଶୁକ ପନ୍ତି
ଉଡ଼ି ଯିବାରେ ଅକାଶ ସୁନ୍ଦର ଦିଶନ୍ତି ।

ଏମନ୍ତ ଶରଦ ଋତୁ କାର୍ତ୍ତିକ ମାସରେ
ଶଯ୍ୟନୁ ଉଠିଲେ ପ୍ରଭୁ ଆପଣା ବାସରେ

ବାଜିଲା ବିବିଧ ବାଦ୍ୟ ଅତ୍ୟନ୍ତ ସମ୍ଭ୍ରମ
ମହା ଉତ୍ସବ ହୋଇଲା ସବୁ ଲୋକଙ୍କର
ଏମନ୍ତ ହୋଇ ଶ୍ରୀ ଜଗନ୍ନାଥଙ୍କ ଚରିତ
ଜଗମୋହନ ନାମରେ ହୋଇଲା ଏ ଗୀତ
ସାଧୁ ଜନମାନେ ଏହା ଶୁଣ ମନ ଦେଇ
ଜଗନ୍ନାଥ ଚରଣେ ଭକତିବନ୍ତ ହୋଇ । ୧୩ ।

ନ ଜାଣଇ ପାଠ ମୋର କିଛି ଜ୍ଞାନ ନାହିଁ
ଭାଷାରେ କହିଲି ଭାବଗ୍ରାହୀ ଭାବ ବହି ।
ଜଳଧିରୁ ଜଳ ବିନ୍ଦୁ ଅଣିଲା ପରାଏ
ଜଗନ୍ନାଥ ଯାତ୍ରା ବିଧି କହିଲି ଥୋକାଏ । ୧୪ ।

ଅପ୍ରମିତ ଅନନ୍ତର ନ ଥିଲେ ହେ ଅନ୍ତ
ଆପଣା ବଳରେ ପକ୍ଷୀ ଉଡ଼ଇ ଯେମନ୍ତ
ସେହିରୂପେ ଅନେକ ରୂପେ ଉତ୍ସବ ଅଛି
କହିଲି ସାର ଦ୍ୱାଦଶ ଯାତ୍ରା ବିଧି ବାଛି । ୧୫ ।

ସାଧୁଜନ ସଙ୍ଗରେ ପୂର୍ବରେ ତାହା ଦେଖି
ବଡ଼ କରି ହୃଦୟ ମଧ୍ୟରେ ଥିଲି ରଖି ।
ଯେତେବେଳେ ପ୍ରବେଶ ହୋଇଲା ନାନା ଦୁଃଖ
ବାହାର ତା କରି ପାଇବାକୁ ମହା ସୁଖ । ୧୬ ।

ଜଗନ୍ନାଥ ଚରିତ ଅମୂଲ୍ୟ ରତ୍ନମଣି
ସବୁଠାକୁ ଭରସା ତା କରୁଅଛି ଜାଣି ।
ଦୁସ୍ତର କାଳ ଚକ୍ରାରୁ ତରିବାକୁ ମୁହିଁ
ଅହର୍ନିଶି ହୃଦ ସମ୍ପୁଟରେ ରଖି ଥାଇ । ୧୭ ।

ଜଗନ୍ନାଥ ନାମ ମୋର ପରମ ମଙ୍ଗଳ
ଜଗନ୍ନାଥ ନାମ ମୋର ସବୁଠାରୁ ବଳ ।
ଜଗନ୍ନାଥ ନାମ ଭବ ଜଳଧିର ଭେଳା
ଜଗନ୍ନାଥ ନାମ ଦୁଃଖ ଅନ୍ଧାରକୁ ହୁଳା । ୨୮ ।

ଜଗନ୍ନାଥ ନାମ ମୋର ଜଗତ ପାବନ
ଜଗନ୍ନାଥ ନାମ ସବୁ ବାର ବ୍ରତମାନ ।
ଜଗନ୍ନାଥ ନାମ ମୋର ସବୁ କର୍ମ ଧର୍ମ
ଜଗନ୍ନାଥ ନାମ ମୋର ନାଶେ ଭବ ଭ୍ରମ । ୨୯ ।

ଜଗନ୍ନାଥ ନାମ ମୋର ଅଭୟ ପଞ୍ଜର
ଜଗନ୍ନାଥ ନାମ ମୋର ସବୁ ସୁଖଘର ।
ଜଗନ୍ନାଥ ନାମ ମୁକ୍ତି ବାଟ ସୁନଶୀର
ବୋଲେ ଦୀନକୃଷ୍ଣ ଜଗନ୍ନାଥ କୃପା କର । ୩୦ ।




କଟକ ପ୍ରାଚୀ ମୁଦ୍ରଣାଳୟରେ ଶ୍ରୀଯୁକ୍ତ ବନ୍ଦ ଚରଣ ପଟ୍ଟନାୟକ
ବି,ଏ, ଙ୍କ ଦ୍ୱାରା ମୁଦ୍ରିତ । ୧୯୩୧

# ଶୁଦ୍ଧିପତ୍ର

| ପୃଷ୍ଠା | ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୧୬ | ୨୧ | ପଛଦ୍ୱୋଇ ରହୁ | ପଛଦ୍ୱୋଇ ରହୁବୋଲି |
| ୧୭ | ୨୦ | ଦଉଡ଼ସ ସଭଯ୍ୟା | ଜଉଡ଼ର ସରସଭଯ୍ୟା |
| ୧୭ | ୨୧ | ଖଇର ଚୂଆ | ଖଇର ଚୂଲ |
| ୧୮ | ୧୬ | ଚୋଲି | ଭୂଲି |
| ୧୯ | ୧୬ | ବନ୍ୟାଯ | ବନାଶ |
| ୨୪ | ୧୪ | ଗର୍ଭଙ୍କୁ | ଗର୍ଭଙ୍କ |
| ୨୫ | ୬ | ଦ୍ୱୋଇ ଏହୁ ବେଶ | ଦ୍ୱୋଇ ବେଶ |
| ୨୫ | ୧୦ | ସେ ବନ୍ଧିକେ | ବନ୍ଧିକେ |
| ୩୧ | ୪ | ଦେଖ ଚନ୍ଦନ | ଦେଖ ତ ଚନ୍ଦନ |
| ୩୪ | ୧୪ | ଇନ୍ଦ୍ର ଚନ୍ଦ୍ରର ବିବରଣ | ଇନ୍ଦ୍ର ଚନ୍ଦ୍ର ନବ ବରୁଣ |
| ୩୫ | ୨୨ | ପାଦ ପଦ୍ମ | ପାଦ ପଦ୍ମର |
| ୪୦ | ୧୦ | ବିରୋଧ | ନିରୋଧ |
| ୪୧ | ୧୧ | ଗନ୍ଧାକୃଷ୍ଟ | ଗନ୍ଧ କୃଷ୍ଟ |
| ୪୨ | ୬ | ରଥରେଣ | ରଥ ଚରଣ |
| ୪୫ | ୧୭ | ସଂଖା | ସଖା |
| ୪୭ | ୪ | ପଢ଼ିବାକୁ | ପଢ଼ିବାକୁ |
| ୪୯ | ୧୭ | ଦାଗଚନ୍ଦ୍ର | ଦାଗ ଚନ୍ଦ୍ର |
| ୫୬ | ୧୧ | ବିଚିତ୍ର ଦିବାଧ | ବିବାଧ |
| ୬୩ | ୮ | ଅବିନିବେଚ | ଅବିବେକ |
| ୭୨ | ୧୧ | ନିଳାଦ୍ରୀ | ନୀଳାଦ୍ରି |

| ପୃଷ୍ଠା | ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୭୭ | ୬ | ରଖାଇ | ଡଖାଇ |
| ୭୭ | ୧୯ | ପଞ୍ଚ ଜନଜ | ପଞ୍ଚ ଜନକ |
| ୮୩ | ୧୫ | ବାନ୍ଧା | କାନ୍ଧା |
| ୮୪ | ୧୧ | ଚନ୍ଦ୍ର କାକୁଳ | ଚନ୍ଦ୍ର କାନ୍ତକୁ |
| ୮୫ | ୧୬ | କଳାପ ଦୋଷ ଦୋଏ ପୁର୍‌ରାଙ୍ଗନା | ପୁରାଙ୍ଗନା କଳାପ ଦୋଷ ଦୋଏ |
| ୮୭ | ୨୦ | ଶିରେ | ସୀରେ |
| ୯୧ | ୧୭ | ସ୍ୱରସ୍ୱତା | ସ୍ୱଚାମ୍ୟତା |
| ୯୩ | ୧୫ | ଦେଶ | ବେଶ |
| ୯୪ | ୧୪ | ପ୍ରଚ୍ଛଦ | ପ୍ରଚ୍ଛନ୍ନ |
| ୧୦୫ | ୧୦ | ଦରଶଦ | ଦରଶନ |
| ୧୧୧ | ୧୧ | ବୋବନ୍ତୁ | ବୋଲନ୍ତୁ |

# ଜଗମୋହନ ଛାନ୍ଦ ଟୀକା

## ପ୍ରଥମ ଛାନ୍ଦ

ଆନନ୍ଦ କନ୍ଦ—ଆନନ୍ଦର ମୂଳକାରଣ ଜଗନ୍ନାଥ । ପରିକ୍ରମା—ପ୍ରଦକ୍ଷିଣ କରିବା । ଦେହାବସାନେ—ମୃତ୍ୟୁପରେ । କମ୍ବୁ କଟକ—ଶଙ୍ଖକ୍ଷେତ୍ର-ପୁରୀ । ଚଇତ୍ରରଥ—ଚୈତ୍ରରଥ=କୁବେରଙ୍କ ବଗିଚା । ନନ୍ଦନ—ଇନ୍ଦ୍ରଙ୍କ ବଗିଚା । ଆରାମ—ଉଦ୍ୟାନ, ବଗିଚା । ଉପଯୋଗ—ଲାଗି । ସୁମନ—ଫୁଲ । ଅମୃତ—ଦୁଧ ବା ଘିଅ, ଜଳ, ଦବ୍ୟ । ଅହିତ ସିତ—କଳା ଧଳା । ଅମୃତଚର—ଖେଚର—ପକ୍ଷିମାନେ । ଅବଗାହ—ସ୍ନାନ । ଅଶ୍ରୁଳ—ଭୂଷଣ୍ଡ କାକ । ସୁଧା—ଚୂନ । ଆଦ୍ଧ—ମହାବସ୍ତ୍ର । ଶେଷ—ଅନନ୍ତ ବାସୁକି । ହଂସ—ସୂର୍ଯ୍ୟ । ଆଣିବନ୍ତପଣ—ବଢପଣ । ପାହ୍ନ—ରକ୍ଷାକାରୀ । ନାଗେନ୍ଦ୍ର—ସର୍ପରାଜ । ଜଗତୀରେ—ଅଟ୍ଟାଳିକାରେ । କୋକନଦ—ରକ୍ତପଦ୍ମ । ଧନପତି—କୁବେର ସେ ଅଳକାର ପୁରୀର ମାଳିକ । କୁଳିଶ—ବଜ୍ର । କଥା ପ୍ରସଙ୍ଗ—କଥାବାର୍ତ୍ତା ଓ ବଷବୈଦ୍ୟ ବା କେଳା । ସୁନାଶୀର—ଇନ୍ଦ୍ର । ଫଣାତ ଫଣାତ—ନାଗଙ୍କ ସମୂହ । ବାଜୁ—ଘୋଡ଼ା । ସାତଅଶ୍ୱରଥ—ସୂର୍ଯ୍ୟଙ୍କ ରଥ । ହସ୍ତକ—ହାତର ଅବୟବ ।

---

## ଦ୍ୱିତୀୟ ଛାନ୍ଦ

ଅପହୃତ—କବାଟ ଫିଟିବା, ନିଦ୍ରାଭଙ୍ଗ କରିବା । ମଲ୍ଲିମ—ବେଶ ଉଲଗି । ଭଡ଼ପ—ଅଳଙ୍କାର ଓ ଆଭରଣ । ଶ୍ରୀଫଳ—ନଡ଼ିଆ । ଦୋପୋଡା-

ବସ୍ତ୍ର ବିଶେଷ । ଚୋଗ୍ର—କଞ୍ଚୁକ, ଶୋଭା । ଶ୍ରୁତିମଧ୍ୟେ ଶ୍ରୁତିଲଗ୍ନ—ଅବଧାନରେ ରହିଲା । ଭୃଙ୍ଗୁଝା—ଭୋଗକାରୀ । ଗୋଷ୍ଠିକା—ପିଷ୍ଟକ ବିଶେଷ ଇକ୍ଷୁ—ଆଖୁ । ଗିଉଡ଼ି ସର—ଖାଦ୍ୟ ବିଶେଷ । ସଉଆ—ପିଷ୍ଟକ ବିଶେଷ ଠାକୁଆ—ମିଷ୍ଟାନ୍ନ ବିଶେଷ । ପାଚିଜାଚକ—ଏକ ପ୍ରକାର ପିଠା । ତାରକ—ଦର୍ପ । ତାରକୁ—ନକ୍ଷତ୍ରଙ୍କୁ ତର୍ଜନ କରି—ହଟାଇ । ବାରକୁ—ନିଷେଧ କରିବାରେ; ବା ବାରକୁ କରି—ଥରେକର । ଅବନୀଦେବ—ବ୍ରାହ୍ମଣ । ହୃଦୟକୁମୁଦ—ହୃଦୟକ୍ତ ହର୍ଷ । ଉଦଆଇ—ଉଦିତ ହୁଏ । ମାର୍ଗଦେଶୀ—ଦେଶୀମାର୍ଗ—ଦେଶୀଗୀତ । ଅମରକୁମୁଦଚନ୍ଦ୍ର—ଦେବତାମାନେ ହେଲେ କଇଁ ଫୁଲ ତାଙ୍କ ମନକୁ ପ୍ରଫୁଲ୍ଲ କରିବାରେ ସେ ଚନ୍ଦ୍ର ଅଟନ୍ତି—ଦେବତାମାନଙ୍କ ମନଉଲ୍ଲାସକାରୀ । ଅରି କରି ମୃଗଇନ୍ଦ୍ର—ଶତ୍ରୁ ହେଲେ ହାତୀ—ତାଙ୍କ ସିଂହ ପରି ସେ ଅଟନ୍ତି—ଶତ୍ରୁ ନାଶକ ।

---

## ତୃତୀୟ ଛାନ୍ଦ

ଚତୁଃସମ—ଚତୁସମ—ଚନ୍ଦନ, ଅଗୁରୁ, କସ୍ତୁରୀ ଓ କୁଙ୍କୁମର ଲେପ । ପରିହରଣ—ପିନ୍ଧିବା । ଜାଇ—ଧୂଳି । ଗର୍ଭକ—କେଶମଧ୍ୟରେ ଥିବା ମାଳା । ଲମ୍ବିତ—ଝୁଲିକା ଫୁଲ । ବେଷ୍ଟିତ—ଗୁଡ଼ାଇବା ଫୁଲ । ଆବେଶ—ଅଭିଭୂତ । ଘୁମିତ—ଘୂର୍ଣ୍ଣିତ । ସମ୍ବରେ—ଅଡ଼ମ୍ବରରେ । ଗନ୍ଧର୍ବସତ୍ତ୍ୱା—ଗନ୍ଧର୍ବ ଗୁଣଯୁକ୍ତା ନୃତ୍ୟ ଗୀତାଦିରେ ନିପୁଣ । ଆବିଦ୍ଧ—କୁଟିଳ, ବଙ୍କା । ଚକ୍ର—ଜୁଡ଼ାରେ ଫୁଲବନ୍ଧା । ଆରୋପ—ଖୋସିବା । କ୍ଷେପଣ—ମସ୍ତକରେ ଫୁଲ ବୃଷ୍ଟି ଇତ୍ୟାଦି । ନିପାତଦୃଷ୍ଟା—ଅଳ୍ପରେ ପଡ଼ୁଛି ଅକ୍ଷିପତା ଯାହାର ନିଞ୍ଜ ଈଷଦର୍ଥରେ ପ୍ରଯୁକ୍ତ । ନିର୍ନିମେଷ—ନିସ୍ପନ୍ଦ ହେଲେ ଶୋଭାର ହାନିହେବ । ଅପୂର୍ବାଲସା—ମନୋହର

ଆଳସ୍ୟ ଯାହାର, ଯଥା :—ମଦାଳସା । ସୁଭଗା ସୁନ୍ଦରୀ । କନ୍ଦର୍ପକେଳି
କଳାଲାଳସୀ—ରତିକଉତୁକୀ । ଭର୍ତ୍ତୃଚେଷ୍ଟା—ଯୋଗୀ । ବକ୍ରବାଣୀ
ଶ୍ଳେଷୋକ୍ତି, ଦୁଇ ଅର୍ଥ ଥିବା କଥା । ଜଗନ୍ମୋହନ—ଜଗତକୁ
ମୋହନ କରିବା । ଖଞ୍ଜନ—ଶୁକ୍ଳକାଳୀକାପକ୍ଷୀ । ରଣରଣକ—କନ୍ଦର୍ପ
ଭାର ତାର—ରତ୍ନାକର ୨ । ତାର ଅତି ଉଚ୍ଚ ଶବ୍ଦ । ହାବ ଭାବ,
ଅନୁଭାବ—ଶୃଙ୍ଗାରର ଚେଷ୍ଟାମାନ ଭାବ—ଅବିକୃତ ଚିତ୍ତରେ
ରସଜନିତ ପ୍ରଥମ ବିକୃତି । ଯୌବନର ଅବିର୍ଭାବରେ ମନର ଅନ୍ୟ
ପ୍ରକାର ଅବସ୍ଥାକୁ ଭାବ କୁହାଯାଏ । ହାବ—ଭ୍ରୂ, ଚକ୍ଷୁ ପ୍ରଭୃତିର
ବିକାରରେ ସମ୍ଭୋଗର ଇଚ୍ଛା ପ୍ରକାଶ କରିବା ଭାବକୁ ହାବ କୁହାଯାଏ
ଅନୁଭାବ—ନିଜର ମନୋଗତଭାବକୁ ସାକ୍ଷାତ୍ ଯେଉଁମାନେ ପ୍ରକାଶ
କରନ୍ତି ସେମାନଙ୍କୁ ଅନୁଭାବ କୁହାଯାଏ ଯେପରି ଭ୍ରୂଭଙ୍ଗ କୋପର
ବ୍ୟଞ୍ଜକ । ମୁଗ୍ଧା—ପ୍ରଥମାବତୀର୍ଣ୍ଣଯୌବନମଦନ ବିକାରା ରତୌ ବାମା
କଥିତା ମୃଦୁଶ୍ଚମାନେ ସମଧିକଲଜ୍ଜାବତୀ ମୁଗ୍ଧା ॥ ପହିଲେ ଯାହାର
କାମ ଭାବ ଜନ୍ମିଛି ଯେ ରତି ପ୍ରତି ପ୍ରତିକୂଳା ସ୍ୱାମିଠାରେ ଅଭିମାନ
ଅଧିକା ଲଜ୍ଜାବତୀ ଯେ ସେ ମୁଗ୍ଧା । ମଧ୍ୟା—ମଧ୍ୟା ବିଚିତ୍ରସୁରତା
ପ୍ରରୂଢ଼ସ୍ମରଯୌବନା । ଈଷତ୍ ପ୍ରଗଲ୍ଭବଚନା ମଧ୍ୟମବ୍ରୀଡିତା ମତା ॥
ପ୍ରଗଲ୍ଭା—ସ୍ମରାନ୍ଧା ଗାଢ଼ତାରୁଣ୍ୟା ସମସ୍ତରତକୋବିଦା । ଭାବୋନ୍ନତା
ଦରବ୍ରୀଡ଼ା ପ୍ରଗଲ୍ଭାଽକ୍ରାନ୍ତନାୟକା ॥ କାମରେ ଅନ୍ଧ ପୂର୍ଣ୍ଣ ଯୁବତୀରତିରେ
କୁଶଳା, ଭାବପ୍ରବଳା ଅଳ୍ପ ଲଜ୍ଜାଶୀଳା, ସ୍ୱାମୀକୁ ନିଜବଳରେ ରଖିବା
ସ୍ତ୍ରୀକୁ ପ୍ରଗଲ୍ଭା କହନ୍ତି । କଳା କଳାପୀ—କଳା ଚତୁଃଷଷ୍ଟି କଳା, କଳାପ
ସମୂହ; ଚଉଷଠି କଳା କୁଶଳା ।

ମଞ୍ଜିଷ୍ଠା—ଅହାର୍ଯ୍ୟୋଽନନ୍ୟସାପେକ୍ଷୋ ଯଃ କାନ୍ତ୍ୟା ବର୍ଦ୍ଧତେ ସଦା ।
ତଦେବମାଞ୍ଜିଷ୍ଠରାଗୋଽସୌ ରାଧାମାଧବୟୋର୍ଯଥା ॥ ଯାହାର ରଙ୍ଗ

।

ନଷ୍ଟ ହୁଏ ନାହିଁ, ସବୁଅଂଶରେ ସମାନ, ଜନର କାନ୍ତିରେ ବୃଦ୍ଧିପାଏ ତାହା ମଞ୍ଜିଷ୍ଠା ରାଗ । କୁସୁମ=କୁସୁମ୍ଭ :—କୁସୁମ୍ଭ ରାଗାସ କ୍ଷେପ୍ତ୍ରୋ ଯଷ୍ଟିତେ ସନ୍ଦର୍ଶିତଃ । ଅନ୍ୟରାଗଚ୍ଛବିବ୍ୟଞ୍ଜୀ ଶୋଭତେ ତ ଯଥା ଯଥ ଯେ ସଂସାଜରେ ଚିତ୍ତରେ ଲକ୍ଷିଯାଏ ଓ ଅନ୍ୟ ଭାବକୁ ପ୍ରକାଶ କରେ ତାହା କୁସୁମ୍ଭ । ରଣ ରଣକ—କାମଦେବ । ଗଭ ନଧାନ—ମୋକ୍ଷର କାରଣ । ସିଦରଜାରେ—ସିଂହ ଦର୍ଜାରେ ପାଠ ଧର୍ମୀଚୀନ ॥ ପ୍ରତିକୂଳ—ବିପରୀତ ଦିଗ ।

---

## ଚତୁର୍ଥ ଛାନ୍ଦ

ଅହି—ଶେଷ, ସଙ୍କର୍ଷଣ । ମୀନକେତନ—ବିଷ୍ଣୁଙ୍କ ପାଦରେ ମତ୍ସ୍ୟ ଓ ପତାକା ଚିହ୍ନ ଅଛି । କାମଦେବଙ୍କ ପକ୍ଷରେ ମତ୍ସ୍ୟ ହୋଇଅଛି ଧ୍ୱଜ ଯାହାଙ୍କର । ଅର୍ଦ୍ଧଚନ୍ଦ୍ର ଧର—ବିଷ୍ଣୁଙ୍କ ପାଦରେ ଅର୍ଦ୍ଧଚନ୍ଦ୍ରର ଚିହ୍ନ ଅଛି ମହାଦେବଙ୍କ ଶିରରେ ଅର୍ଦ୍ଧଚନ୍ଦ୍ର ଥାଏ । ମହାଭୂତିଦ ତା—ମହା ଐଶ୍ୱର୍ଯ୍ୟ ଦାତା । ମହା ଭୂତଗଣ—ବଡ଼ ବଡ଼ ଭୂତମାନେ ତାଙ୍କର ଆଜ୍ଞାରେ ଥାଆନ୍ତି । ବିଷ୍ଣୁପକ୍ଷେ—ମହା ପ୍ରାଣୀଙ୍କର । ମନ୍ଦାକିନୀରେ ସୁଶୋଭିତାଃ—ମହାଦେବଙ୍କ ଶିରରେ ଗଙ୍ଗା ଓ ବିଷ୍ଣୁଙ୍କ ପାଦତଳେ ଗଙ୍ଗା ବହୁ ଅଛନ୍ତି ଅଙ୍କୁଶ—ଗଣେଶଙ୍କ ହସ୍ତରେ ଓ ବିଷ୍ଣୁଙ୍କ ପାଦଚିହ୍ନ ବିଶେଷ । ବଜ୍ର—ଇନ୍ଦ୍ରଙ୍କ ଆୟୁଧ, ବିଷ୍ଣୁଙ୍କ ପାଦ ଚିହ୍ନ । ସୁମନସ—ଦେବତାମାନେ ଓ ବୁଦ୍ଧି ବନ୍ତ ଲୋକେ । ଚକ୍ର—ମଣ୍ଡଳ ଓ ସୁଦର୍ଶନ ଚକ୍ର । ଶଙ୍ଖ ପଦ୍ମ ନିଧି—ବରୁଣଙ୍କ ଭଣ୍ଡାରରେ ଶଙ୍ଖ ପଦ୍ମ ନିଧି ଥାଏ; ଶଙ୍ଖ ପଦ୍ମର ଅତିର ସମୁଦ୍ର ଓ ବିଷ୍ଣୁ ପଦଚିହ୍ନ ଦୁଇ ଗୋଟି । ଧ୍ୱଜ, କଳସ, ଅମ୍ବର—ପତାକା କଳସ ଓ ବସ୍ତ୍ର ବଡ଼ ରଥୀଙ୍କ ରଥରେ ଥାଏ; ବିଷ୍ଣୁଙ୍କ ପାଦର ଚିହ୍ନ ।

ଅମ୍ବର — ଆକାଶ । ଧନୁ — ବିଷ୍ଣୁଙ୍କ ପାଦର ଚିହ୍ନ ବିଶେଷ । ଊର୍ଦ୍ଧ୍ୱରେଖା ଯବ, ତ୍ରିକୋଣ ସ୍ୱସ୍ତିକ, ଅଷ୍ଟକୋଣ ଓ ବିନ୍ଦୁ — ମହାପୁରୁଷଙ୍କ ଠାରେ ଥାଏ, ଓ ବିଷ୍ଣୁଙ୍କର ପାଦଚିହ୍ନ ମାନ । ମୁନି ମାନସ ମାନସ ମାନସରେ — ମୁନିମାନଙ୍କ ମନର ମନ ରୂପକ ମାନସରୋବରରେ । କମଳା — ଲକ୍ଷ୍ମୀ । ଅଷ୍ଟ ଐଶ୍ୱର୍ଯ୍ୟ — ଅଣିମା, ଲଘିମା, ପ୍ରାପ୍ତି, ପ୍ରାକାମ୍ୟ, ଈଶିତା, ବଶିତା. କାମାବସାୟିତା । ତରଣି — ନୌକା । ବାରଣ — ହସ୍ତୀ । ପାଷାଣ ହୋଇଥିବା ଅବଳା — ଅହଲ୍ୟା । ଧର୍ମ ନନ୍ଦନ — ଯୁଧିଷ୍ଠିର । କାଠକୁ ବଜ୍ର ଅଙ୍ଗ - ଶାଳଗ୍ରାମ । ଅହଲ୍ୟା — ଦାରୁ । ମାଷ୍ଟ ମାର୍ଜାର — କାଣିନାଲ ସାପ

---

## ପଞ୍ଚମ ଛାନ୍ଦ

ଖଉପ — ଶୀତଲୁଗା ବିଶେଷ । ଅଙ୍ଗରକ୍ଷା — ଶରୀରକୁ ରକ୍ଷା କରିବା । ଦିହାଣୀ — ତଳୁଆ । ଘୋଡ଼ — ଆଚ୍ଛାଦନ । ନଘୋଡ଼ କରି = ନିବୃତ୍ତ କରି । ଶ୍ରୀକର୍ପୂର ଗନ୍ଧ ଉଚ୍ଛି = ଯୋଗ କରାଇ — ଲଗାଇ ବା କର୍ପୂର ସେବା କରାଇ । ଉଚ୍ଛି ସ୍ପନ୍ଦନ ଗନ୍ଧେ କାହା କବରୀ ସାଜିବ ଭ୍ରମ ଗଉଡ଼ୀ — ପ୍ରସମ୍ପ୍ରଧାନଧି । ଗଉଁଛି — ଦେହରେ ଲୁଗା ଗୁଡ଼ାଇ ପିନ୍ଧାଇବା । କବାଇ — ବୀରପୋଷାକ ବିଶେଷ । କମ୍ବୁରଥ ଚରଣ — ଶଙ୍ଖ ଓ ଚକ୍ର । କାମ୍ଭୀର — କୁଙ୍କୁମ । ଉତ୍ପଳ — ପତାକା । ଭ୍ରସଳ — ଭଅଁର । ମହାପାପୀ ପାପସୀମା — ମହାପାପୀର ପାପକୁ ନାଶ କରନ୍ତା ଅଟନ୍ତି ଏହି ଅର୍ଥରେ ବ୍ୟବହୃତ । ଚନ୍ଦ୍ରାକୃତି ଶକଳ — ଚନ୍ଦ୍ରଖଣ୍ଡ ଭଳି ।

---

## ଷଷ୍ଠ ଛାନ୍ଦ

ରସାଳବଉଳ — ଆମ୍ବଉଳ । ନବପଲ୍ଲବ — କଅଁଳଅପତ୍ର । କିଂଶୁକ — ପଳାଶଫୁଲ । ପାଟକରବାଳ — ଢାଲଖଣ୍ଡା । ଦ୍ୱିଜବର —

ବ୍ରାହ୍ମଣ ଓ ପକ୍ଷୀଶ୍ରେଷ୍ଠ । ଭ୍ରମର କଦମ୍ବ—ଭଅଁର ସବୁ । ମନମଥ—ମନମଥ—କନ୍ଦର୍ପର ମନକୁ ମନ୍ଥି ଦେଉଛୁ ଯେ ବେଶ । ବାରନାରୀ—ବେଶ୍ୟା । ମକରକେତନ—କନ୍ଦର୍ପ ।

୮—ପ୍ରାଭବ—ପରାଭବ । ଗିରିଜାବଲ୍ଲଭ—ମହାଦେବ । ନେତ୍ର ଅନଳ ପତଙ୍ଗ—କାମଦେବ । ପ୍ରସାଦେ—ଅନୁଗ୍ରହରେ । ପ୍ରହରଣ—ଶର, ଅସ୍ତ୍ର । ହଂସକ—ହଂସୁଲି-ପାଦର ଅଳଙ୍କାର ବିଶେଷ । ଶାତକୁମ୍ଭ—ସ୍ୱର୍ଣ୍ଣ । ଶଳକା—ବାଡ଼ । ସୁମମଣ୍ଡଳ—ପୁଷ୍ପ ସମୂହ । ବିତାନ—ଚନ୍ଦୁଆ । ଫରୁଣା—ଆନନ୍ଦରେ । ବାରଣବୃକ୍ଷ—କଦଳୀଗଛ । ସୁଧା—ଚୂନ । ଅମରପତିଦିଗ—ପୂର୍ବଦିଗ । ସବିତା—ସୂର୍ଯ୍ୟ । ତତ—ତାରବାଦ୍ୟ ବିଶେଷ । ଅନକ—ଢକ୍କା ବିଶେଷ । ସୁଷିର—ବଂଶୀ ପ୍ରଭୃତି ବାଦ୍ୟ । ପକ୍ଷାଘ—ଦୋଳ ହଲାଇ । ଦନ୍ତିଦନ୍ତ ଦୋଳା—ହାତୀ ଦାନ୍ତରେ ନିର୍ମିତ । ପିଲ୍ଲେ—ଦେହରୁ ବାହାରିଥିବା ।

---

## ସପ୍ତମ ଛାନ୍ଦ

ଦିନକର କରେ—ସୂର୍ଯ୍ୟଙ୍କ କିରଣରେ । ଶୀର୍ଣ୍ଣତର—ଶୁଖି ଯାଇନ୍ତି । ସନ୍ତପନ୍ତ—ବିକଳ । ଆତପଘାତ—ଖରା ତାଡ଼ଣାରେ । ମଧ୍ୟପାଣ୍ଡବ—ଅର୍ଜୁନ, ଏଠାରେ ଅର୍ଜୁନ ବୃକ୍ଷ । ସୁମନ—ଫୁଲ । ତୃଣଧ୍ୱଜ ବାଉଁଶ । ସଘତ—ସମୂହ । କମଳ—ଜଳ । ଗନ୍ଧର୍ବ ବଇରୁ—ମହିଷ । ପାଦପଙ୍କେ—ପଙ୍କ ସ୍ଥାନରେ । ବନ୍ଧୁପାଦ—ବୃକ୍ଷ । କର୍ପୂର ଉଷ୍ଣା ପଟନୀ—କର୍ପୂର ଦିଆ ହୋଇଥିବା ଲୁଗା । କବର—ଜୂଡ଼ା । ଅଳକା—କପାଳରେ କେଶ ତଳକୁ ପିନ୍ଧିବା ଅଳଙ୍କାର ବିଶେଷ । ସୁନାଶୀର—ଇନ୍ଦ୍ର । ଅଶେଷ ପାଶେ—ଗୃହପାଖରେ । ବିଟଙ୍କ—ଉଚ୍ଚ ଆସନ । ଅପସର

— ବଡ଼ ମାଣ୍ଡି ବା ତକିଆ । ତନ୍ତୁଭାଗ—ସ୍ୱର୍ଣ୍ଣର ଧୀପ । ଚାମୀକର—ସୁବର୍ଣ୍ଣ । କନ୍ଦର୍ପ ଦର୍ପବିମୋଚନୀ—କାମର ଗର୍ବନାଶକାରିଣୀ । ଭୁଜଯୁଗରଦକ୍ଷିଣୀ—ଭୁଜଯୁଗଳର ଧନର ଦାନ ଯାହାର । ଅନ୍ଧ—ରୂପଯୁକ୍ତା । ହସ୍ତକ—ହସ୍ତର ଅଭ୍ୟାସ । ଶମଦମବଳେ—ଯୋଗୀର ଗୁଣ ବଳରେ । ଷଡ୍ଦ୍ୱୈପାଡ୍—ଜୁତୁକୁଳିଆ ଯୋଦ୍ଧା । ବୃନ୍ଦାରକବୃନ୍ଦ—ଦେବତାମାନେ । ବୈତାଳପତ୍ର—ଥଳାଛତା । ତମ୍ବୁସ—ଉପକରଣ ସ୍ଥଳ ବିଶେଷ ଯେଉଁଥିରେ କ ପିତ୍ତଳ ବା ସୁନାର ଚନ୍ଦ୍ର ସୂର୍ଯ୍ୟ ମଣ୍ଡା ହୋଇଥାଏ, ଯଥା—ସାତ ଦଶେ ଚନ୍ଦ୍ର, ସୂର୍ଯ୍ୟ ତମ୍ବୁଷେ ପୁନର । ର, ପ । କଳାନ୍ତ—ଛୋଟ ଛୋଟ ପତାକା ବା କନା । ଚନ୍ଦ୍ରଦୀପ—କର୍ପୂର ଦୀପ ବା ମହୀର ଦୀପ । ଚନ୍ଦ୍ରଉଦୟ—ଚନ୍ଦ୍ରଙ୍କ ଅବିର୍ଭାବ । ରଙ୍ଗଭୂମି—ନୃତ୍ୟ ସ୍ଥାନ । ତିନତାପ-ଆଧ୍ୟାତ୍ମିକ, ଆଧିଦୈବିକ, ଆଧିଭୌତିକ ।

## ଅଷ୍ଟମ ଛାନ୍ଦ

ଚନ୍ଦ୍ର—କର୍ପୂର । ଫିଆଲ—ଖୋଲାଇ । ସିଲୁଅ—ଏକପ୍ରକାର ବସ୍ତ୍ର । ମାଧ୍ୱୀ—ମହୁରେ ତିଆରି ମଦ । ସିନ୍ଦୂର—ସିନ୍ଦୂର ବର୍ଣ୍ଣର । ଅମ୍ବର-ଲୁଗା ବା ଆକାଶ । ତାରତର—ଉଜ୍ଜ୍ୱଳତର । ଅନ୍ତ—ଅସୂର୍ଯ୍ୟ । ପୁଷ୍କଳ —ଦାନାଦିରେ ବଦାନ୍ୟତା ଯୋଗୁଁ ଖ୍ୟାତି ଲଭିଥିବା ଲୋକ । ଅରଦ—ରୂପଯୁକ୍ତ । ଅଜାଚିମୋପୃ—ଅକଳଙ୍କା । ସର୍ବଜପତି—ସମୁଦ୍ର । ସଳାଉ ଢକ୍କା ବା ବାଦ୍ୟ ବିଶେଷ । ସୁରବନ୍ଦିନ—ଦେବତାଙ୍କ ରହିବା ସ୍ଥାନ । ତରଙ୍ଗ ତରଙ୍ଗିମା—ଲହରି ଲହରି । ଅଘ—ପାପ । ଶର୍ବରୀ—ରାତି ।

ଆରତ ଅଘବାରଣ ମନ୍ତ୍ରପାଣୀନ୍ଦ୍ର—ଦୁଃଖ ଓ ପାପ ରୂପକ ହାତୀକୁ ମାରୁଥିବା ସିଂହ—ଦୁଃଖ ଓ ପାପ ନାଶକାରୀ । ମାନବଙ୍କ ଗର୍ଭ—ମାନବର ପୁନର୍ବାର ଜନ୍ମ । ପଦ୍ମାକର—ପଦ୍ମପୂର୍ଣ୍ଣ ପୁଷ୍କରିଣୀ । ପରିଦ୍ଧଣ-ପରିଧାନ, ପିନ୍ଧା । ନିଗମ—ବେଦ । ବଂକାର—ଶୁଣ୍ଢ ।

# ନବମ ଛାନ୍ଦ

ମେଘପୁଷ୍ପ—ଜଳ । ସୁବାସ – ସୁଗନ୍ଧ; ମୁଖ ବାସ । ମହୀରୁହ — ଗଛ । ଇନ୍ଦ୍ରଗୋପ—ସାଧବଘର ବୋହୂ । ବଶିଖ–ଶର । ଶଲ୍ୟ — ଶେଳ । ଶୂଲ—ତୀକ୍ଷ୍ଣଅସ୍ତ୍ର । ଗ୍ରେଠ–ଘାତ । ସଂଘଠବପ୍ରକାଶ । ଚନ୍ଦ୍ରମୁକୁଟ–ମହାଦେବ । କେକୀ କେକଣୀ–ମୟୂର ମୟୂରୀ । କୃପୀଠ– ଜଳ । କମଳମସ୍ତ–ଜଳମସ୍ତ । ଫୂର–ପ୍ରକାଶି । ଷଡ଼ଜ–ଋଷଭ, ଧଇବତ, ମଧ୍ୟମ—ସପ୍ତ ସ୍ୱରରୁ ଗୃତସ୍ୱର । କଠକ–ବାସସ୍ଥାନ । ମକରଧ୍ୱଜ—କନ୍ଦର୍ପ ; ଗୃର—ବନ୍ଧନ ବା ବଷ । କୁଟଜ–କୋରେଇ ଫୁଲ । ଅକଙ୍କ ବରସ୍ତ୍ରୀ—କାମାତୁର । ପ୍ରଂଥାନରସ–ଶୃଙ୍ଗାର । ଭଳ – ବହଳ ହେବାକୁ । କୁରୁବକ ନା ବଳ – ପୁଷ୍ପମାନଙ୍କର ନାମସମ୍ବନ୍ଧ । ପାରୀନ୍ଦ୍ର – ସିଂହ । ଲହରୀସୁତ—ଲହରେଇ କର ସୁତ କଲବା ବା ବଡ଼ସୁତ, ଅନନ୍ତଲହରୀ ପ୍ରଭୃତି । ଦଶ ଚଉଦ ଲୋକେ—୧୪ବ୍ରହ୍ମାଣ୍ଡରେ । ସୃତ–ବାଟ । ଠମାଲ=ପରହାସ । ସାଧବ–ସଉଦାଗର । ଅଗ୍ରଲୋକ – ବ୍ରାହ୍ମଣାଦ । ଦୟିତ—ସ୍ୱାମୀ । ଶ୍ଳେଷ–ଯୋଗ । ଉଦ୍ଧବେ–ହର୍ଷର ଅବେଗରେ । ଅଲଙ୍କାର–ଶରୀର ଶୋଭାଜନକ ଧର୍ମ ସମ୍ବନ୍ଧ – ଭାବ ହାବ ପ୍ରଭୃତି ୨୮ ଗୋଟି ।

ପଞ୍ଚବଶିଖ ପଞ୍ଚଶରଙ୍କୁ କାର୍ମୁକ ପଞ୍ଚଜନମାନଙ୍କ ଅଙ୍ଗେ ଚଖାଇ– କନ୍ଦର୍ପ ଧନୁର ପାଞ୍ଚଶରଙ୍କୁ ( ଅରବନ୍ଦ ଅଶୋକ, ଚୂତ, ନବମାଳକା, ନୀଳୋତ୍ପଳ ) ଲୋକମାନଙ୍କ ଅଙ୍ଗେ ଅନୁଭବ କରାଇ । କଉମୁଦକ– କୃଷ୍ଣଙ୍କ ଗଦା । ରଥାଙ୍ଗ – ଚକ୍ର । ପଞ୍ଚଜନକ–ପଞ୍ଚଜନଦୈତ୍ୟଠାରୁ ଜାତ । ପାଞ୍ଚଜନ୍ୟ–ଶଙ୍ଖ ।

ହୀରକେଦାର–ଅଲଙ୍କାର ବଶେଷ । ଖରଦପବ ଶବ୍ଦସାପତ୍ର–

ଶରତ୍ ପୂର୍ଣ୍ଣିମା ରାତିର ଚନ୍ଦ୍ର । ଚନ୍ଦ୍ରମାକର — ଚନ୍ଦ୍ରକିରଣ । ତୁଷାର — ହିମ । କ୍ଷୀର—ସମୁଦ୍ର ଫେଣ । ଅରୁଣ—ସୂର୍ଯ୍ୟ ଲାଲବର୍ଣ୍ଣ । ଅବଳନା ନ କର—ସମ୍ଭାଳ ନ ପାରଇ । ହେମ ଶତପତ୍ର—ସୁନା ପଦ୍ମ । ଅଜାତ-ପକ୍ଷ ବକ୍ଷବ ରଥଘୋଡ଼—ପକ୍ଷୀ ଶାବକ । ଘୋଡ଼—ନଉକା । ବାରଣ — ହାତୀ । ବରୁଣ ସୁତା—ଲକ୍ଷ୍ମୀ । ଅରୁଣ ସୁତା ଛବି ଦୂଷଣ—ଯମୁନାର କଳା ବର୍ଣ୍ଣକୁ ଗଞ୍ଜୁଛି ।

## ଦଶମ ଛାନ୍ଦ

ଦୋସରୀ—ବାଦ୍ୟ ବିଶେଷ । ଶୁଷିର—ବଂଶୀ ପ୍ରଭୃତି ବାଦ୍ୟ ଗୋମୁଖ — ବାଦ୍ୟ ଯନ୍ତ୍ର ବିଶେଷ । ଶିଶୁପାଳାନ୍ତ, ମଧୁମା — କୁଥ ସୁନ୍ଦର କଣ୍ଠ ପଶ କଷ୍ଟ ଯାହାର । ଭ୍ରାନ୍ତେ- ଶୋଭିତେ, ଭ୍ରମଣରେ । ଅବିକ — କୁଟିଳ । ଅମୃତଦାଣୀ — ମୋକ୍ଷ ଦାତା, ଜଳଦାତା । ଅନନ୍ତ ଅଙ୍କବିହାରୀ — ଅନାଶଶ୍ୱୟୀ, ଅନନ୍ତ ସର୍ପର କୋଡ଼ରେ ଶୟନ କରନ୍ତି । ଚପଳା — ଲକ୍ଷ୍ମୀ, ବିଜୁଳି । ଅନାଥ ଚକ୍ଷୁ ଅରବିନ୍ଦ — ଅନାଥ ଲୋକମାନେ ହେଲେ ପଦ୍ମ । ଘନ ଉପରେ — ଜଳରେ ବା ଶୃଙ୍ଗାରରେ । ପକ୍ଷୀରଥ ପତି — ପକ୍ଷୀମାନଙ୍କର ରଜା । କଶ୍ୟପ ନନ୍ଦ — ଗରୁଡ଼ । ଆହ୍ଲାଦ କରନ୍ତୁ — ଶୀତଳ କିରଣରୁ, ଆନନ୍ଦ ପ୍ରଦାନକାରୀ ହେଉ । ଅମୃତକର — ଅମୃତ କିରଣ ଯାହାଙ୍କର । ବିଷ୍ଣୁପକ୍ଷେ—ମୋକ୍ଷକର । ତାରକ ମଣ୍ଡନ—ଚନ୍ଦ୍ର ତାରାଙ୍କ ଦ୍ୱାରା ମଣ୍ଡିତ; ବିଷ୍ଣୁପକ୍ଷେ ତାରକା — ହାରରେ ଭୂଷିତ । ତମ ବିଖଣ୍ଡନ— ଅନ୍ଧକାର ଦୂର କରନ୍ତି, ଅଜ୍ଞାନ ନାଶ କରନ୍ତି । କମଳାଙ୍କ — କମଳ ଯେ ହରିଣ ଅଙ୍କରେ—କୋଡ଼ରେ ଯାହାଙ୍କର । କମଳାଙ୍କ — ଲକ୍ଷ୍ମୀଙ୍କ-କୋଡ଼ରେ । ବିଧୁ — ଚନ୍ଦ୍ର ଓ ବିଷ୍ଣୁ । ନନ୍ଦଘୋଷ ଉଦୟେ — ନନ୍ଦଘୋଷ ହେଲା ଉଦୟ ପର୍ବତ । ଅଘ ଅନ୍ଧକାର — ପାପରୂପ ଅନ୍ଧାର ।

( ଏଠାରେ ପଦେ ଛାଡ଼ ଅଛି )

ଏତେ ନିର୍ମଳ ହୋଇ ଯେ ନ ଦିଶନ୍ତି ମହାଗଗନବାଟ ସଖି ।
ଆନନ୍ଦଜଳଧି ନ ଉଚ୍ଛୁଳି ନେତ୍ର ଚକୋର ନୁହନ୍ତେ ସୁଖୀ ॥

ମହାଗଗନବାଟ — ଚନ୍ଦ୍ର, ଆକାଶ ମାର୍ଗ ଯାହାଙ୍କର ମୋକ୍ଷ ବାଟ ଯେ ଶସ୍ତ । ଆନନ୍ଦରୂପ ସମୁଦ୍ର—ନେତ୍ରରୂପ ଚକୋର, ଚକୋର ଚନ୍ଦ୍ରରେ ଯେପରି ସୁଖୀ; ଲୋକଙ୍କ ନେତ୍ର ଜଗନ୍ନାଥଙ୍କ ଠାରେ ସେହିପରି । ହୃଦୟ ଚନ୍ଦ୍ର କାନ୍ତକୁ — ହୃଦୟ ହେଲା ଚନ୍ଦ୍ରକାନ୍ତମଣି — ଚନ୍ଦ୍ର ଚନ୍ଦ୍ରକାନ୍ତ ମଣିକୁ ଦ୍ରବାଏ ସେହିପରି ଏ ଜଗନ୍ନାଥ ହୃଦୟକୁ ଦ୍ରୁତ କରାନ୍ତି । କର କମଳ — ହସ୍ତରୂପ ପଦ୍ମ । ଧନହସ୍ତ ଆଉ କାହିଁକି ନ ଦେବାରେ ବୁଜି ହୁଅନ୍ତି । ଶୋକ ରଥାଙ୍ଗ — ଶୋକ ଯୁକ୍ତ ଚକ୍ରବାକ; ପୂର୍ଣ୍ଣିମା ରାତିରେ ଓଲଟା ହେଲା ଚନ୍ଦ୍ର କାରଣରେ ପଦ୍ମ ମଉଳି ଯାଏ ଓ ରାତିରେ ଚକ୍ରବାକଙ୍କ ବିରହ ହୁଏ କିନ୍ତୁ ଏ ଜଗତରେ ଜଗନ୍ନାଥ ଯେ ଚନ୍ଦ୍ର ତାଙ୍କ ଦ୍ୱାରା ଅଦ୍ଭୁତ ଫଳ ଫଳିଲା । ଚନ୍ଦ୍ର ଶୀତଭାନୁ ଉଜ୍ଜ୍ୱଳ ଦ୍ରବ୍ୟ କି ସ୍ନେହ ଦରଶନ ବାହାରେ — ସ୍ତ୍ରୀମାନଙ୍କର ମୁଖ ହେଲା ଚନ୍ଦ୍ର ସେଥିରେ ଚକ୍ଷୁ ହୋଇଛି ଉଜ୍ଜ୍ୱଳ ଏପରି ମିଳନ ବାହାରେ ଦେଖା ହେଉଛି । ପୁରଙ୍ଗନା କଳାପ — ପୁରଙ୍ଗନାମାନେ । ଘନାଘନ — ମେଘ ନନ୍ଦୀଘୋଷ ହେଲା ଆକାଶ । ଅମୃତ — ଜଳ ଓ ମୋକ୍ଷ । ବୃଷ୍ଟି କର — ଦାନକର । ଶିଖୀ — ମୟୂର, ଅନ୍ୟମାନେ ନାଚିବାରୁ ଶିଖୀ ନାଚୁ ଅଛନ୍ତି ।

୩୬ । ଘନେ······କାନ୍ତ—ମେଘରେ ବିଜୁଳିର ଶୋଭା ଖେଳୁଛି —ଲକ୍ଷ୍ମୀଙ୍କର ଶୋଭା ପ୍ରକାଶ ପାଉଛି । ହରିତ ଅମ୍ବର — ଗାଢ଼ ନୀଳ ଆକାଶ, ହଳଦିଆ ଲୁଗା । ଇନ୍ଦ୍ର ଶରାସନ—ଇନ୍ଦ୍ରଧନୁ । ପ୍ରଭା—ଶୋଭା । ମହା ସମ୍ବରେ — ମହା ଆଡ଼ମ୍ବରରେ । ନନ୍ଦିଘୋଷ ଅମ୍ବରେ — ନନ୍ଦିଘୋଷ ରୂପ ଆକାଶରେ — ଏ ଘନ — ମେଘ ବର୍ଣ୍ଣିର ଜଗନ୍ନାଥ । ମେଘ ପ୍ରକାଶରେ କଦମ୍ବ ଫୁଲ ଫୁଟେ ଏହାଙ୍କ ପ୍ରକାଶରେ ପୁଲକ କଦମ୍ବ —

ପୁଲକ ସମ୍ବନ୍ଧ ଶରୀର ରୋମାଞ୍ଚିତ ହୁଏ । ଇନ୍ଦ୍ରଗୋପ—ସାଧବ ଘର ବୋହୂ । ରଙ୍ଗ ବସନୀ—ନାଲ ଲୁଗା ପିନ୍ଧିଲା ସ୍ତ୍ରୀମାନେ ହେଲେ ସାଧବ ବୋହୂ । ସାଧବ ବୋହୂ ପୃଥିବୀ ଫଟାଇ ବାହାର ହୁଏ—ଏମାନେ ପୃଥିବୀର ଲୋକମାନଙ୍କ ହୃଦୟ ଭେଦ କରୁଛନ୍ତି । ଅଙ୍କୁର ମଧ୍ୟ—ସାଧବ ବୋହୂ ରଙ୍ଗବସନୀ—ନାଲ ଲୁଗାର ଘୋଡ଼ଣି ଦେଇଅଛି । ଆନନ୍ଦର କନ୍ଦ—ଆନନ୍ଦର ମୂଳ କାରଣ । ଚଇତ୍ର ରଥ—ଚୈତ୍ରରଥ—କୁବେରଙ୍କ ଉଦ୍ୟାନ । ନନ୍ଦନ—ଇନ୍ଦ୍ରଙ୍କ ଉଦ୍ୟାନ । ଆରାମ—ଉଦ୍ୟାନ, ଉପବନ । ଉପଯୋଗ—ଲାଗି । ସୁମନ—ଫୁଲ ।

ଚଞ୍ଚଳା—ଲକ୍ଷ୍ମୀ । କେ ବୋଲେ······ଅନ୍ତର୍ଗତ—ଦୁଧରେ ଘିଅଥିଲା ଭଳି, ଜଗନ୍ନାଥ ହେଲେ ଶକ୍ତିମାନ୍ ତାଙ୍କର ଶକ୍ତି ଲକ୍ଷ୍ମୀ ତାଙ୍କଠାରେ ଅଛନ୍ତି । ଶ୍ରୁତିରେ—ବେଦରେ । ତସ୍କର—ଉନ୍ନ ଉନ୍ନ କରଣ ପାତ । ହେତୁ—କାରଣ । ଯାମିନୀ—ସ୍ତ୍ରୀ । କାନ୍ତ କାନ୍ତ—ସୁନ୍ଦର ସ୍ୱାମୀ । ଭୂଷଣ—ଅଳଙ୍କାର । ଏହାଙ୍କର·········ସ୍ଥଳ । ଲକ୍ଷ୍ମୀଙ୍କ ନାମରେ ଢ—ଶୋଭାରେ ସ୍ଥଳ ହୋଇଛି । ଅଙ୍ଗ—ଲୋହ ଗୁଣ୍ଡି । ରସନା—କଟିମେଖଳା । ମଣ୍ଡନ—ଭୂଷଣ । ସୁଖଧାମ—ସୁଖର ସ୍ଥାନ । ପଦ୍ମଆଖି—ଜଗନ୍ନାଥ । ଲୋକେ—ସଂସାରରେ ।

୪୨ । ଘନସାର ଅଙ୍ଗ—ମେଘ ହୋଇଛି ସାର ଯାହାର ଏପରି ଅଙ୍ଗ ଯାହାଙ୍କର । ବରୁଣ ନନ୍ଦିନୀ—ବାରୁଣୀ ମଦ୍ୟ । ବରୁଣ ନନ୍ଦିନୀ—ଲକ୍ଷ୍ମୀ । ଘନସାର ତନୁ—କର୍ପୂର ସଦୃଶ ଶରୀର ।

୪୩ । ଚିତ୍ରରଥ ଗନ୍ଧର୍ବ ଗାୟକ ହୋଇ ଇନ୍ଦ୍ରଙ୍କ ପାଖରେ ଗାଏ । ଏଠାରେ ମନୋହର ଓ ଘୋଡ଼ା ଏବଂ ଗାୟକ ଦେବରାଜ ଢ ଢ ଜଗନ୍ନାଥଙ୍କ ସମ୍ମୁଖରେ ଗାଏ ।

୪୪ । ପଞ୍ଚଆଶ୍ୱ—ନ୍ୟୋଗୀ । ସ୍ରକ—ମାଳା । ବନିତା—ସ୍ତ୍ରୀ ସ୍ୱର୍ଗରେ ଦେବତାମାନେ ଖଟଣିରେ ଅଛନ୍ତି—ଫୁଲମାଳା, ଚନ୍ଦନ ଓ

ଦେବନାରୀମାନଙ୍କୁ ଭୋଗ କରନ୍ତି । ଏଠାରେ ମଧ ତାହା ଅଛି ଏଠାରେ ବ୍ରହ୍ମାଦ — ବ୍ରହ୍ମାବର୍ତ୍ତରେ ଥିବା ବ୍ରାହ୍ମଣ ଓ ଅନାନ୍ୟ ଦେବତାମାନେ ଓ ବ୍ରାହ୍ମଣମାନେ ।

୪୬ । ଯାତ୍ରୀ ସମୁଦ୍ର ପର । ଏଠାରେ ତାଙ୍କର ସବୁ ଲହରୀ ସଙ୍ଗେ ସମାନ । ସିନ୍ଧୁର — ହସ୍ତୀ, ଅଶ୍ୱ, ମକର, ଶିଶୁମାର ମୂର୍ତ୍ତି ସବୁ ଯାହାରେ ବନ୍ଦି ନମସ୍କାରେ ଅଛି ।

୪୭ । ରଥ ଏଠାରେ ବୋଇତ । ପାଟ ପତାକା ନେତ ଏସବୁ ବୋଇତରେ ପାଲ ପର ।

୪୮ । ସାଧବ—ବଣିକ, ନୌବ୍ୟବସାୟୀ । ମାଧବ—ବିଷ୍ଣୁ । ନହା ସମୃରେ—ମହା ଆଡମ୍ବରରେ । ଚତୁର୍ବର୍ଗ—ଧର୍ମ, ଅର୍ଥ, କାମ, ମୋକ୍ଷ । ଶ୍ୱେତଦ୍ୱୀପ — ମହା ବିଷ୍ଣୁଙ୍କ ସ୍ଥାନ । "ସହସ୍ରପତ୍ରକମଲ• ଶ୍ୱେତଦ୍ୱୀପାଖ୍ୟମଦ୍ଭୁତମ୍' ବ୍ରହ୍ମସଂହିତା ।

୫୦ । ଅମୂଲ୍ୟ··ସୁନ୍ଦର । ଚନ୍ଦ୍ରଶିର—ମହାଦେବ, ତାଙ୍କ ଗିରି କୈଳାସ—ତାହାର ମଧଭାଗକୁ ସ୍ୱର୍ଣ୍ଣ କଳ୍ପ ମେଘପରି ସୁନ୍ଦର । କାମପାଳ ଯେ ବଳରାମ ତାଙ୍କ କଣ୍ଠକରେ କଣ୍ଠରେ ରାମକୃଷ୍ଣ ବାସସାର ସୁନ୍ଦର କଳା ଭଲ ଲୁଗା ଦେଖ ।

୫୧ । ଅରୁଣ······ଆକୃତି—ନୀଳପଦ୍ମର କୋଡ଼ରେ ଭଅଁର ପରି ଆଖିର ଶୋଭା—ଆଖି ନୀଳ ଓ କଳା ଡୋଳା ଭଅଁର ପରି । ବରୁଣ ନନ୍ଦନୀ—ବାରୁଣୀ ମଦ୍ୟ ପାନରୁ ସେ ଆଖି ମାଡ଼ିପଡ଼ୁଛି ।

୫୨ । ରେବତୀ··ହଳମୂଷଳ । ବଳଦେବଙ୍କସ୍ତ୍ରୀ ରେବତୀ, ତାଙ୍କ କୁଚରେ ଲେପ ଦେବାରେ ପଟୁ ଯେଉଁ ହସ୍ତ—ସେଥିରେ ହଳ ମୂଷଳ ତାଙ୍କ ଦେହରେ ଅନେକ ଧଳା ଫୁଲମାଳ ଥିବାରୁ ଦୁଧସମୁଦ୍ର ଢେଉ ପରି ଦେଖା ଦେଉଅଛି ।

୫୩ । ଦନ୍ତବକ୍ର ଅସୁରର ଦାନ୍ତ ଭାଙ୍ଗି ତାକୁ ମାରଥିଲେ— ଏହି ବଳରାମ ତାହାର ଦାନ୍ତ ଭାଙ୍ଗି ତାକୁ ମାରଥିଲେ । ଧର୍ମରାଜ-ଯମ, ତାହାର ଭଉଣି ଯମୁନା—ତାଙ୍କୁ ଲଙ୍ଗଳରେ ଆକର୍ଷଣ କରଥିଲେ । ୫୪ । ସହସ୍ରମୁଖ—ଅନନ୍ତସର୍ପ, ବାସୁକିର ହଜାର ମୁହଁ । ୫୭ । ସୋରେହା—ଶବା । ଗୃହା—ଲାଳସା । ଫାଇ—ବେଣୀ ଫୁରୁଣା—ମନ ହର୍ଷରେ । ୬୦ । ରମ୍ଭାଫଳ— କଦଳୀ । ଚନ୍ଦ୍ର —କର୍ପୂର । ୬୧ । ଗଙ୍ଗାବାଣ ପଦ୍ମପେଠୀ—ଗଙ୍ଗାବାଣ ନାମକ ଜାତିଏ ନଡ଼ିଆର ପଇଡ଼ । କୂଷ୍ମ—ଗୋଲମରଚ । ଚନ୍ଦ୍ର— କର୍ପୂର । ୬୨ । ପରମସରକ—ଦୁଗ୍ଧରେ ପ୍ରସ୍ତୁତ ପକ୍ୱାନ୍ନ ବିଶେଷ । ୬୫ । ଦେବା କଥାରେ ସମ୍ପୃ ନାହିଁ—ସବୁଦା ଦିଅ ଲାଗିଛୁ । ଚତୁର୍ବର୍ଗ ହି ଦଶେ ନାଉନ—ଭାବରେ ଭକ୍ତର ବାଞ୍ଛା ପୂର୍ଣ୍ଣ କରିବା ତୁଳନାରେ ଚତୁର୍ବର୍ଗ ଦାନ ତୁଚ୍ଛ ନୁହେଁ । ୬୭ । ପ୍ରହରଣ —ଆୟୁଧ । ୬୮ । ଆଦୈବନ୍ତ ପଣ—ଅଛି ବଡ଼ପଣ । ୭୦ । ବଦସ୍ତ୍ରୀ—ବରକୋଳ । ଅଶେ—ଆଶାକରେ । ମଚ୍ଛକା—ମାଛ । ଦୁର୍ବାସନା—ସଦରୁଚ, ଦୁର୍ବାସନା—ଦୁର୍ଗନ୍ଧ ।

## ଏକାଦଶ ସ୍କନ୍ଧ

୧ । ସମ୍ଭବରେ—ଅଡ଼ମ୍ବରରେ । ବସ୍ତ୍ରପଦେ—ଆକାଶରେ, ବୃନ୍ଦାରକ ବୃନ୍ଦ—ଦେବତାମାନେ ।

୨ । ପ୍ରମୋଦ—ହସ କୌତୁକ । ସୁନାସୀର—ଇନ୍ଦ୍ର । ସୁନାସୀର ଠାରୁ···ପିଅନ୍ତ—ଏଠାରେ ଦେବତା ଓ ଅସୁରମାନଙ୍କର ବିରୋଧ ନାହିଁ ।

୩ । ବେଦନ୍ଲୋକ—ହୁଇକଣି ଲେଖାଁ ।

୪ । ସେନା—ସେନା ପତି, ଉଲ୍ଲଙ୍ଘି—ଓଲ୍ଲାଇବା ।

୬ । ସୁରମ୍ୟତା—ସୁସ୍ୱାଦୁ । ଚକ୍ରୁ—ଅନ୍ନ । ପର ପ୍ରମାଦ—ଶତ୍ରୁ ନାଶକାରୀ ।

୭ । ଚଞ୍ଚଳା-ଲକ୍ଷ୍ମୀ । ଗୁଣ୍ଡିଚ୍ଚା ମଣ୍ଡପକୁ ଲକ୍ଷ୍ମୀ ନାହାନ୍ତି । ଅତନୁ—କାମ ।

୮ । ବସୁନ୍ଧର—ଶ୍ୱେତ ।

୯ । ଦିନବନ୍ଧୁ—ସୂର୍ଯ୍ୟ । ସକାଳ ସୂର୍ଯ୍ୟ ଉଦୟରେ ଯେପରି ପଦ୍ମ ପ୍ରସ୍ଫୁଟିତ ହୁଏ । ଏଠାରେ ଜଗନ୍ନାଥଙ୍କ ଦର୍ଶନରେ ତାଙ୍କର ଶ୍ରୀମୁଖ ପଦ୍ମ ପ୍ରସ୍ଫୁଟିତ ହେଲା । ଚକ୍ରବାକ-ଚକ୍ରୁଆ ପକ୍ଷୀ-ଚକ୍ରୁଆ ପକ୍ଷୀ ସ୍ତ୍ରୀପୁ ପରି-ଲମ୍ବ ଅଶାରେ ସକାଳେ ଆନନ୍ଦିତ ହୁଏ, ସେହିପରି ଚକ୍ରୁଆ ରୂପ ଲୋକମାନଙ୍କର ମନ ଜଗନ୍ନାଥଙ୍କ ଦର୍ଶନରେ ଖୁସି ହେଲା । ଶୀରାବ୍ଧିପତି-ନାରାୟଣ ।

୧୦ । ସ୍ୱାଦୁ—ମାଧୁରୀ ।

୧୧ । ବାରନାରୀ—ବେଶ୍ୟା ।

୧୨ । ଅମ୍ବର—ବସ୍ତ୍ର ।

୧୩ । ଉରଜ—ସ୍ତନ ।

୧୪ । ନାଗର—ଶୁଣ୍ଠି, କୃଷ୍ଣ—ଗୋଲମରିଚ, ଚନ୍ଦ୍ର—କର୍ପୂର ପ୍ରଚ୍ଛନ୍ନ—ଛବି, ମେଘ ଅଙ୍ଗରୁ ଯେପରି ବିଜୁଳି ଅଲଗା ନୁହେଁ, ସେହିପରି ଜଗନ୍ନାଥଙ୍କଠାରୁ ଲକ୍ଷ୍ମୀଙ୍କ ମୂର୍ତ୍ତି ଅଭେଦ ଅର୍ଥାତ୍ ଭିନ୍ନ ନୁହେଁ ।

୧୫ । ବିଧୁ—ଅଭାବ-ବଧୂ-ବସ୍ତୁ-ବସ୍ତୁ ନ ଥିବାରୁ ଚନ୍ଦ୍ରରେ ଭାବ ଅର୍ଥାତ୍ ପ୍ରୀତି ହେଉନାହିଁ । ବସ୍ତୁ ନଥିବାରୁ ଲକ୍ଷ୍ମୀଙ୍କ ଚନ୍ଦ୍ର ମଧ୍ୟ ଭଲ ଲାଗୁ ନାହାନ୍ତି । ବିଧୁରତା—କ୍ଳେଶ । ବିଧୁସରାଗୀ—ବସ୍ତୁ ସରାଗୀ, ଲକ୍ଷ୍ମୀ । ବଇରାଗେ-ବିରାଗ ଭାବରେ । ବିଧୁ—କର୍ପୂର, ଶ୍ରୀଖଣ୍ଡ—ଚନ୍ଦନ

୧୬ । ବରଷା··················ଜଗତଗୋ—

ବର୍ଷାକାଳରେ ଲକ୍ଷ୍ମୀଙ୍କ ବସ୍ତ୍ର ଛାଡ଼ ଯାହାରେ ଗଳ ଯିବାରୁ ଜଗତ ଲୋକମାନଙ୍କ ଆନନ୍ଦ ଦେଲେ । ସୁଖରାଶି ବସ୍ତ୍ର ପ୍ରକୃତରେ ପ୍ରବାସୀ ହେଲେ ସୁଖ ଅର୍ଥାତ୍ ବରଷା ଦୂର ହେଲେ ସୁଖରାଶି ହୁଏନାହିଁ କମ୍ବା ଜଗତର ଆନନ୍ଦ ନ ଥାଏ, ବରଷା କାଳରେ ସୁଖରାଶି ବ—ସ୍ୱାମୀ ପ୍ରବାସୀ ହେଲେ ଜଗତଙ୍କ ଆନନ୍ଦ ଦାୟକ ହୁଏ ନାହିଁ ।

୧୬ । ଅଙ୍ଗାରକ ଅଗ୍ନି ଶିଖା ।

୧୭ । ଅଡ଼ପ—ଗୁଣ୍ଡିଗୁ ।

୧୮ । ଏହୁ ଯେବେ......ଅଙ୍କୁଶ—ନିଷେଧ ରୂପକ ହସ୍ତୀର ସଙ୍କୋଚ ନମିତ୍ତ କରରେ ଅଙ୍କୁଶ ଧରଲେ ଅର୍ଥାତ୍ ଯିବା ପାଇଁ ବ୍ୟଗ୍ର ହେଲେ ।

## ଦ୍ୱାଦଶ ଛାନ୍ଦ

ବଧୂବର—ମଳନ । ଓଢ଼ର—ଖୋଲିଯିବା—ଫେଡ଼ିଯିବା । ଅବଲେପ—ଗର୍ବ, ତାପ । ଶମ୍ପା—ବଜୁଳି । ହେମ—ସୁବର୍ଣ୍ଣ, ହମ ପାଠ ମଧ୍ୟ ଗ୍ରହଣୀୟ । ସୁମନସ—ଫୁଲ । ଜ୍ୟୋତିଧର—ନକ୍ଷତ୍ର । ଦଶନ—ଦାନ୍ତ । ବଶିଖ—ଶର । ଅବତାର—ପ୍ରବେଶ । ଅର୍ଦ୍ଧଚନ୍ଦ୍ର ଦୂଷଣ—ଅଳ୍କତରେ ଅର୍ଦ୍ଧଚନ୍ଦ୍ରକୁ ଲାଜ ଦେଉଛି । ମଦକଳ—ମଦମତ୍ତ । ପୁଷ୍ପବନ୍ତ—ଚନ୍ଦ୍ର ଓ ସୂର୍ଯ୍ୟ । ରାଗ—ସ୍ନେହ, କ୍ରୋଧ ।

## ତ୍ରୟୋଦଶ ଛାନ୍ଦ

ଚାନ୍ଦୁରେଖା—ଜଗନ୍ନାଥଙ୍କ ଅଳଙ୍କାର ବଶେଷ । କାମଦେବ ବାମ—ମହାଦେବ । ବିଷ୍ଣୁପଦ—ଆକାଶ । କପୋତକାର—ସ୍ଫଟ । ବୃନ୍ଦାରକ... ବନ୍ଦ—ଦେବତାମାନେ ବନ୍ଦନା କରୁଅଛନ୍ତି । ଅପ୍ରମିତ—ବହୁଳ । ଅନ୍ତପାଟ—ଯବନକା । ବ୍ୟାଜେ—ଛଳରେ । ବାହୁକ—ରଥଚାଳକ । ଶତାଙ୍ଗ—ରଥ । ପିତୃବନ—ଶ୍ମଶାନ । ସୀରପାଣି—ଲାଙ୍ଗଳ ହସ୍ତରେ ଯାହାଙ୍କର, ବଳଦେବ । ସବ୍ୟସାଚ—ଦୁଇ ହାତରେ ବାଣ

ମାରିଲା—ବାମ ହାତରେ ମଧୁ ଶର ନିକ୍ଷେପ କଲା । ନିର୍ବାଣ ଅପୁନ-ମୋକ୍ଷ ଦାତା, ଜଗନ୍ନାଥ । ଅରୁଣ — ବାଳସୂର୍ଯ୍ୟ । ଚକ୍ରଚୟ — ଚକ୍ରବାକ ସବୁ ।

## ଚତୁର୍ଦ୍ଦଶ ଛାନ୍ଦ

ତାମ୍ରଚୂଡ଼ — କୁକୁଡ଼ା । ଦ୍ୱିଜ — ଚନ୍ଦ୍ର । ରୂପାଜୀବା — ବେଶ୍ୟା । ଭୁଜଙ୍ଗ — ଲମ୍ପଟ । ତରଳ ତରଙ୍ଗ — ତରଙ୍ଗ ପରି ଚଞ୍ଚଳ । ଉପପତି — ଜାର । ଧୂପମଶକ — ଧୂଆଁରେ ପଳାଇଲା ମଶା ପରି । ଅଭିସାରିକା — ଯେ ସ୍ତ୍ରୀ ରାତିରେ ପ୍ରିୟ ନିକଟକୁ ଗମନ କରେ । ଖଣ୍ଡିତା — ସମୟରେ କାନ୍ତର ସମାଗମ ନ ହେବାରୁ ଯେ ସ୍ତ୍ରୀ ହତାଶ ହୋଇଥାଏ । ହେହା — ରବ । ହତସ୍ତୋମ — ଦଳସବୁ । କଉଶିକ — ପେଚା । କୁଟେ — ଘାତକରେ । କୋଳେ — କ୍ରୋଡ଼ରେ । ଜୃମ୍ଭାଳସ — ହାଇ ମାରି ଅଳସ୍ୟ ଭାଙ୍ଗିବା । ନିଶାଚର — ରାକ୍ଷସ ବା ଚୋର । ଗଳଗ୍ରହ — ମରଣାନ୍ତକ, ବ୍ୟାଧି ବିଶେଷ । ରମଣୀମଣି — ସ୍ତ୍ରୀମାନେ । ରମଣୀମଣି — ସ୍ତ୍ରୀଙ୍କ ଅଳଙ୍କାର । ଦୀନବନ୍ଧୁ — ଜଗନ୍ନାଥ । ଦିନବନ୍ଧୁ — ସୂର୍ଯ୍ୟ । ଶ୍ରୀକରରେ — ଶ୍ରୀହସ୍ତରେ — ସୁନ୍ଦର କିରଣରେ । ଅରବିନ୍ଦ ଚକ୍ର — ପଦ୍ମ ଓ ଚକ୍ରବାକ ବା ପଦ୍ମ ସମୂହ । ଚତୁର୍ବର୍ଣ୍ଣ — ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର । ବ୍ୟାପାରେ — ନିଜ ନିଜ କାର୍ଯ୍ୟରେ । ବାଗାଡ଼ମ୍ବର — କଥାରେ ଆଡ଼ମ୍ବର । ତାର ତାରକା — ଉଜ୍ଜ୍ୱଳ ନକ୍ଷତ୍ର । ଅମୃତ — ଚନ୍ଦ୍ରକିରଣ । ଚନ୍ଦ୍ରକାନ୍ତ ଯନ୍ତ୍ର — ଚନ୍ଦ୍ରକାନ୍ତ ମଣିସବୁ ବା ଚନ୍ଦ୍ରକିରଣ ସବୁ ଅମୃତ ଆହାରରେ ଯେପରି ସୁନ୍ଦର ଦିଶନ୍ତି । ଶିଖୀ — ମୟୂର । ମୁନି କୁସୁମ — ଅଗସ୍ତି ଫୁଲ । ଦୋସ୍ତ — ପୁଷ୍ପଲତା ବିଶେଷ । ମାନସରୁ ମାନସର ବାସୀ — ମାନସରୋବରରୁ ରାଜହଂସ । ରସାଳ — ଆମ୍ବ । ସମ୍ପୁଟ — ଫରୁଆ ।

— ସମ୍ପୂର୍ଣ୍ଣ —

